# ବାଲିଯାତ୍ରା

ବିସ୍ତାରିତ ଦୃଶ୍ୟାଡ଼ମ୍ବର ସମ୍ବଳିତ, ମୁକ୍ତ-ବି ମଞ୍ଚ, ମୌଳିକ
ଐତିହାସିକ ଗୀତିନାଟ୍ୟ ।

ଓଡ଼ିଶା ଇତିହାସର ଅବିସ୍ମରଣୀୟ ଯୁଗାନ୍ତକାରୀ ଯାତ୍ରା······
······ଏଇ **"ବାଲିଯାତ୍ରା"**

ଶ୍ରୀ ଧୀରେନ୍ ଦାଶ

ପ୍ରକାଶିକା—**ଶ୍ରୀମତୀ ପଦ୍ମିନୀ ଦାଶ**
୩୫୫, ସମ୍ବାଦ ନଗର
ଭୁବନେଶ୍ୱର-୭

ନାଟ୍ୟକାର—**ଶ୍ରୀ ଧୀରେନ୍ ଦାଶ**
ପ୍ରଚ୍ଛଦପଟ ଶିଳ୍ପୀ—**ଶ୍ରୀ ଜଗଦୀଶ କାନୁନଗୋ**
ବରାଟ ପ୍ରେକ୍ଷା ନକ୍ସାଙ୍କନ—**ଶ୍ରୀ ନିର୍ମଳକାନ୍ତ ସେନ**

ପ୍ରଥମ ଅଭିନୟ ରଜନୀ—ନଭେମ୍ବର ୧୪ ତାରିଖ ୧୯୭୦
ସ୍ଥଳ—'ବରାଟ ପ୍ରେକ୍ଷା' ମୁକ୍ତାଙ୍ଗନ, କଟକ
ଅନୁଷ୍ଠାନ—'ସଂସ୍କୃତି ବିହାର' କଟକ



ମୂଲ୍ୟ—**ତିନି ଟଙ୍କା**

# "ବାଲିଯାତ୍ରା"ର

## ସଂକ୍ଷିପ୍ତ ସୂଚନା

ଅନ୍ତତଃ ଅଢ଼େଇ ହଜାର ବର୍ଷ ପୂର୍ବେ ଭଗବାନ ବୁଦ୍ଧଙ୍କର ଆବିର୍ଭାବ ସମୟକୁ ପ୍ରାଚୀନ ଉତ୍କଳରେ ବୈଦେଶିକ ନୌବାଣିଜ୍ୟ ସୁପ୍ରତିଷ୍ଠିତ ଥିଲା ।

ଖ୍ରୀଷ୍ଟାବ୍ଦ ଷଷ୍ଠ ଶତାବ୍ଦୀର କଥା, ସେତେବେଳେ କଳିଙ୍ଗ, ଉତ୍କଳ ସମିଶ୍ରଣରେ କଙ୍ଗୋଦ ସାମ୍ରାଜ୍ୟ ବିଦ୍ୟମାନ ଥିଲା । ଶୈଳୋଦ୍ଭବ ବଂଶର ମହା ପ୍ରତିପତ୍ତିଶାଳୀ ରାଜା ଯଶୋଭିତମାଧବରାଜା, ମଧ୍ୟୋତ୍କଳରେ ବିଶାଳ କଙ୍ଗୋଦର ଏକଛତ୍ରପତି ସମ୍ରାଟ । କୋଶଳ, ତୋଶଳ ତଥା ଅନ୍ୟ ବହିଃଶତ୍ରୁମାନଙ୍କ ଦ୍ୱାରା କଙ୍ଗୋଦ ବିରୁଦ୍ଧରେ ଘନ ଘନ ଆକ୍ରମଣ ସତ୍ତ୍ୱେ ଯଶୋଭିତ ଦିଗ୍‌ବିଜୟ କରି କଙ୍ଗୋଦର ଯଶ ବଜାୟ ରଖିଥିଲେ । ବାଜପେୟ ଯଜ୍ଞ ତଥା ଅଶ୍ୱମେଧ ଯଜ୍ଞ ଅନୁଷ୍ଠିତ ହୋଇଥିଲା । ଶିକ୍ଷା ସଂସ୍କୃତି ଯଥେଷ୍ଟ ଉନ୍ନତି ଲାଭ କରିଥିଲା । ରାଜା ଶିବ ଉପାସକ ଥିଲେ, ରାଜଭାଷା ରୂପେ ସଂସ୍କୃତ ଭାଷା ବ୍ୟବହାର ହେଉଥିଲା ।

ହର୍ଷବର୍ଦ୍ଧନ କଙ୍ଗୋଦ ବିରୁଦ୍ଧରେ ଯୁଦ୍ଧ କରିଥିଲେ କିନ୍ତୁ ରାଜତ୍ୱ କରି ପାରି ନ ଥିଲେ । ତୋଷଳର ଉନ୍ମତ୍ତକେଶରୀଙ୍କ ସେନାପତି ରଣକ ବିଷବର୍ଣ୍ଣବ କଙ୍ଗୋଦ ବିରୁଦ୍ଧରେ ସଂଗ୍ରାମ କରି ଅକୃତକାର୍ଯ୍ୟ ହୋଇ-ଥିଲେ । କୋଶଳର ରାଜା ନାନାଦେବ, କଙ୍ଗୋଦ ବିରୁଦ୍ଧରେ ଯୁଦ୍ଧ କରି ନିହତ ହୋଇଥିଲେ ଏବଂ ତାଙ୍କ ପୁତ୍ର ତିବର, ଘନ ଘନ ଆକ୍ରମଣ କରି ପରାସ୍ତ ହୋଇଥିଲେ ।

ଚୀନ ପରିବ୍ରାଜକ ହୁଏନ୍‌ସାଂ ଏହି ଯଶୋଭିତ ମାଧବରାଜାଙ୍କ ସମୟରେ କଙ୍ଗୋଦ ପରିଭ୍ରମଣ କରିଥିଲେ ।

ଯଶୋଭିତ ମାଧବରାଜାଙ୍କ ଦୁଇ ପୁତ୍ର, ଧର୍ମରାଜ ମାନଭିତ ଓ ଶୈଳେନ୍ଦ୍ର ମାଧବରାଜା । ଉଭୟେ ମହାଯୋଦ୍ଧା ।

କୋଶଳ ରାଜା ଭବର ପରାସ୍ତ ହୋଇ ନିଜର ଏକମାତ୍ର କନ୍ୟା ସନ୍ତାନ ସୁମିତ୍ରାଙ୍କୁ ଶୈଳେନ୍ଦ୍ର ମାଧବରାଜାଙ୍କୁ ସମର୍ପଣ କରିଥିଲେ ଓ କୋଶଳର ରାଜ୍ୟ ମଧ୍ୟ ସମର୍ପଣ କରିଥିଲେ ।

କଙ୍ଗୋଦ ପରମ୍ପରା କ୍ରମେ ଯଶୋଭିତ ମାଧବରାଜାଙ୍କ ପରେ ଜ୍ୟେଷ୍ଠ ପୁତ୍ର ଧର୍ମରାଜ ମାନଭିତ କଙ୍ଗୋଦ ସିଂହାସନାଧିକାରୀ ହେଲେ ।

ଭବରଙ୍କ ଚକ୍ରାନ୍ତ କ୍ରମେ ଦୁଇ ଭାଇ ଧର୍ମରାଜ ଓ ଶୈଳେନ୍ଦ୍ର ମାଧବ ରାଜାଙ୍କ ମଧ୍ୟରେ ଭୀଷଣ "ଫାସିକ ସମର" ହୋଇଥିଲା ।

ଶୈଳେନ୍ଦ୍ର ମାଧବରାଜା ପ୍ରଥମେ ଜିଣି, ପରେ ପରାସ୍ତ ହୋଇଥିଲେ ଏବଂ ରାଜଦ୍ରୋହ ଅପରାଧରେ 'ନିର୍ବାସନ' ଦଣ୍ଡ ପ୍ରାପ୍ତ ହୋଇ ବଂଶ ସହସ୍ର ସୈନ୍ୟ ସାମନ୍ତ ସହ ବାଲିଦ୍ୱୀପକୁ ଦେଶାନ୍ତର ହୋଇଥିଲେ ।

ସେହି ମହାନ୍ ତଦାତ୍ମ୍ୟ ସମ୍ବର୍ଦ୍ଧନାର ପ୍ରତୀକ ରୂପେ ପ୍ରତିବର୍ଷ ପାଳିତ ହେଉଛି ଏଇ 'ବାଲିଯାତ୍ରା' ।

ଏହା ହିଁ ନାଟକର ବିଷୟବସ୍ତୁ ।

ଏହି ଗୀତିନାଟ୍ୟଟି ଗତାନୁଗତିକ ନାଟ୍ୟଲେଖା ଧାରାରେ ଲେଖା ହୋଇନାହିଁ । ଏଥିରେ ଦୃଶ୍ୟ ବା ଅଙ୍କର ଇଙ୍ଗିତ ପରିବର୍ତ୍ତେ କେବଳ 'ଦୃଶ୍ୟାନୁକ୍ରମ' ଦର୍ଶା ଯାଇଅଛି । ପାଠକପାଠିକାମାନଙ୍କୁ ବିଶେଷ ଅନୁରୋଧ ଯେ ଗୀତିନାଟ୍ୟଟି ପଢ଼ିବା ପୂର୍ବରୁ ଅନ୍ୟ ପୃଷ୍ଠାରେ ଦିଆ-ଯାଇଥିବା "ରଙ୍ଗମଞ୍ଚ ପ୍ରେକ୍ଷା" ନକ୍‌ସାଟିକୁ ହୃଦୟଙ୍ଗମ କରନ୍ତୁ । ଏହା ମଧ୍ୟରେ ଥିବା ୨ୟ ମଞ୍ଚକୁ ମଧ୍ୟୋତ୍କଳର କଙ୍ଗୋଦ ଏବଂ ୧ମ ଓ ୩ୟ ମଞ୍ଚକୁ ଯଥାକ୍ରମେ କଙ୍ଗୋଦର ଦକ୍ଷିଣ ପଶ୍ଚିମ ତଥା ଉତ୍ତର ପଶ୍ଚିମ ସୀମାନ୍ତ ବୋଲି ବୁଝି ନେବାକୁ ହେବ ।

**ଧୀରେନ୍ ଦାଶ**


ବିରାଟ ପ୍ରେକ୍ଷାରେ
ବେଶ ଘର
"ବାଲି ଯାତ୍ରା"ର ନକ୍ସା
ହାତୀ
୭
ଘୋଡ଼ା
ରଥ
୮
ସୈନ୍ୟଗଣ
ପତାକା ମାଳା
ବାଜା ବୃନ୍ଦ
୫
୪
୬
୧
୨
୩
ପ୍ରଥମ ମଞ୍ଚ
ଦ୍ୱିତୀୟ ମଞ୍ଚ
ତୃତୀୟ ମଞ୍ଚ
ଗଡ଼ଖାଇର ଜଳଧାର
ଦ ର୍ଶ କ ମ ଣ୍ଡ ଳୀ

## କାଳଯାତ୍ରାର—ଚରିତ୍ରଗଣ

ପୁରୁଷ ଭୂମିକାରେ—

ସୂତ୍ରଧର—ଗାୟକ, ପାଳିଆ
କଙ୍ଗୋଦ ରାଜା ଯଶୋଭିତ
କଙ୍ଗୋଦ ଯୁବରାଜ ଧର୍ମରାଜ
କଙ୍ଗୋଦ ରାଜକୁମାର ଶୈଳେନ୍ଦ୍ର ମାଧବ
କଙ୍ଗୋଦ ମହାମନ୍ତ୍ରୀ ସତ୍ୟସନ୍ଧ
ବିଦୂଷକ (୧)
ମୁଖ୍ୟ ସୌଦାଗର
୧ମ ସୌଦାଗର
୨ୟ ସୌଦାଗର
୩ୟ ସୌଦାଗର
୧ମ ଚର
୨ୟ ଚର
କୋଶଳ ରାଜା ଶବର
ହର୍ଷବର୍ଦ୍ଧନ
ହର୍ଷବର୍ଦ୍ଧନଙ୍କ ଦୂତ
ହୁଏନସାଂ
କଙ୍ଗୋଦର କଳିଙ୍ଗ ସେନା
କଙ୍ଗୋଦର ଉତ୍କଳ ସେନା
ହର୍ଷବର୍ଦ୍ଧନଙ୍କ ସେନା
କୋଶଳର ସେନା
କଙ୍ଗୋଦର ରାଜପଣ୍ଡିତ
ଅନ୍ୟ ସୌଦାଗରଗଣ
ଅନ୍ୟ ପୁରୁଷଗଣ

ନାରୀ ଭୂମିକାରେ—

କୋଶଳ ରାଜଜେମା ସୁମିତ୍ରା
ସହଚରୀ ପଦ୍ମା
ସହଚରୀ ମଞ୍ଜୁଷା
ନର୍ତ୍ତକୀ
ଅନ୍ୟ ସ୍ତ୍ରୀଗଣ

## "କାଳଯାତ୍ରା" ଗୀତନାଟ୍ୟର ପ୍ରଥମ ରଜନୀରେ ଯେଉଁମାନେ ଅଂଶଗ୍ରହଣ କରିଥିଲେ

**ପୁରୁଷ :**

ଯଶୋଧ୍ୱଜ—ମନମୋହନ ରାୟ
ଧର୍ମରାଜ—ନାରାୟଣ ସିଂହ
ଶୈଳେନ୍ଦ୍ର ମାଧବ—ଜୟ କୁମାର
ହର୍ଷବର୍ଦ୍ଧନ—ବିଜୟ ଚକ୍ରବର୍ତ୍ତୀ
ସତ୍ୟସନ୍ଧ—ନୃସିଂହ ନାୟକ
ଦୂତ—ଚୈତନ୍ୟ ମଲ୍ଲିକ
ଛବର—ବୈଷ୍ଣବ ଚରଣ ସାହୁ
ବିଦୂଷକ—ମାୟାଧର ସାହୁ
୧ମ ଚର—ମାୟାଧର ପ୍ରଧାନ
୨ୟ ଚର—ସୁରେନ୍ଦ୍ର ମହାନ୍ତି
ହୁଏନ୍‌ସାଂ—ବାଞ୍ଛାନିଧି ତ୍ରିପାଠୀ
ସୌଦାଗରଗଣ—ବଟକୃଷ୍ଣ ବେହେରା, କ୍ଷେତ୍ରବାସୀ ସାହୁ, ପ୍ରମୋଦ ଚୌଧୁରୀ, ବିଭୂଦତ୍ତ ନାୟକ, ବଙ୍କିମ ବିହାରୀ ଘୋଷାଲ, ଜଗନ୍ନାଥ ଜେନା, ଭାସ୍କର ବେହେରା
ସୈନ୍ୟଗଣ—କାର୍ତ୍ତିକ, ରବୀନ୍ଦ୍ର, ଶ୍ୟାମ, ବିନୋଦ, ନିମାଇଁ, ଦେବେନ୍ଦ୍ର, ନବେନ୍ଦ୍ର, ମନୋରଞ୍ଜନ ଓ ଅନ୍ୟାନ୍ୟ

**ସ୍ତ୍ରୀ :**

ସୁମିତ୍ରା—ଲକ୍ଷ୍ମୀଧର ବେହେରା
ପଦ୍ମା—ବିଶ୍ୱନାଥ ବେହେରା
ମଞ୍ଜୁଷା—ବିକ୍ରମ କେଶରୀ ବେହେରା

ସ୍ମାରକ : ଚନ୍ଦ୍ରଶେଖର ମିଶ୍ର, ପରୀକ୍ଷିତ ନନ୍ଦ ଓ ଦେବେନ୍ଦ୍ରନାଥ ସିଂ

ସଙ୍ଗୀତ : କିଶୋର କବି ଶ୍ୟାମସୁନ୍ଦର, ମନୋଜ କୁମାର ସିଂ, ନିର୍ମଳକାନ୍ତ ସେନ, ସ୍ୱରୂପନନ୍ଦନ ନାୟକ, ଗଙ୍ଗାଧର ଦାସ, ପ୍ରତିମା, ଝରଣା ଓ କିରଣବାଳା

ବାଦ୍ୟଯନ୍ତ୍ର : ନଟକୃଷ୍ଣ, ବୈକୁଣ୍ଠ, ବଙ୍କିମ, ଟମ, କୋଦଣ୍ଡା ଏସ୍. ରମୁଲୁ

ଆଲୋକ ସଜ୍ଜା : ଜାନକୀ ବଲ୍ଲଭ ଦାସ

ରୂପ ସଜ୍ଜା : ରୂପଶ୍ରୀ ଟସାକସୁ

ପରିଚାଳନା : ନୃସିଂହ ଚରଣ ସାମଲ, ବିଜୟ ମିଶ୍ର, ଗଣେଶ କୁମାର ମିଶ୍ର, କାଶିନାଥ ସେନ, ଦୀପକ ମିଶ୍ର, ଲଲ ଉମାକାନ୍ତ ଷ୍ଟନ୍ଦ

ସହନିର୍ଦ୍ଦେଶନା : ରବି ଦାଶ (ସଖା)

ରଚନା, ପ୍ରେକ୍ଷା ପରିକଳ୍ପନା ଓ ନିର୍ଦ୍ଦେଶନା : **ଧୀରେନ୍ ଦାଶ**

---

ଏହି "ବାଲଯାତ୍ରା" ଗୀତିନାଟ୍ୟଟି ଗଣକବି ବୈଷ୍ଣବ ପାଣିଙ୍କ ଶୈଳୀର ଅନୁସରଣରେ 'ସଂସ୍କୃତି-ବିହାର'ର 'କାର୍ତ୍ତିକ ଉତ୍ସବ' ଉପଲକ୍ଷେ, "ବିରାଟ ପ୍ରେକ୍ଷା" ପାଇଁ ସ୍ୱତନ୍ତ୍ରଭାବେ ରଚିତ ହୋଇଥିଲେ ହେଁ, ଏହାର ପରିବେଷଣ ଶୈଳୀ ପରିବର୍ତ୍ତନ କରି, ଆବଶ୍ୟକାନୁଯାୟୀ ଏହାକୁ ଏକମୁଖୀ, ଦ୍ୱିମୁଖୀ, ତ୍ରିମୁଖୀ ବା ଚତୁର୍ମୁଖୀ ରଙ୍ଗମଞ୍ଚରେ ମଧ୍ୟ ପରିବେଷଣ କରାଯାଇ ପାରିବ ।

ଏହି 'ବାଲଯାତ୍ରା'ର ସମସ୍ତ ଗୀତଗୁଡ଼ିକ ଗଣକବି ବୈଷ୍ଣବ ପାଣିଙ୍କ ଗୀତାବଳୀର ପ୍ରଚଳିତ ସ୍ୱର ଅବଲମ୍ବନରେ କରାଯାଇଛି । ସ୍ୱର ପାଇବାକୁ ଅସୁବିଧା ହେଲେ ବ୍ୟକ୍ତିଗତ ଭାବେ, ଲେଖକଙ୍କ ଠାରେ କିମ୍ବା 'ସଂସ୍କୃତି-ବିହାର' ଅନୁଷ୍ଠାନରେ ସନ୍ଧାନ ନେଲେ, ପାଇ ପାରିବେ ।

---

ଏହି ବାଲଯାତ୍ରାଟି ପ୍ରଥମେ ଗଦ୍ୟାକାରରେ ଲେଖା ଯାଇଥିଲା ଏବଂ ଏହାର ଗୋଟିଏ ସଂକ୍ଷିପ୍ତ ବେତାର ରୂପକ କଟକ ଆକାଶବାଣୀ କେନ୍ଦ୍ରରୁ ଏକାଧିକବାର ପ୍ରସାରିତ ହୋଇଛି ।

ଶ୍ରୀଯୁକ୍ତ ବାମଦେବ ମିଶ୍ର ଏହି ଲେଖାର ପ୍ରାଥମିକ ଗଦ୍ୟାବସ୍ଥାରେ ସଂଳାପ ରଚନାରେ ମୋତେ ସାହାଯ୍ୟ କରିଛନ୍ତି, ସେଥିପାଇଁ ମୁଁ କୃତଜ୍ଞତା ଜଣାଉଛି ।

ଏହି ପୁସ୍ତକ ପ୍ରକାଶନ ପାଇଁ ଯେଉଁ ବନ୍ଧୁମାନେ ପ୍ରତ୍ୟକ୍ଷ ବା ପରୋକ୍ଷରେ ମୋତେ ସାହାଯ୍ୟ କରିଛନ୍ତି, ସେମାନଙ୍କୁ ମୋର ଆନ୍ତରିକ ଧନ୍ୟବାଦ ଜଣାଉଛି ।

# "ବାଲିଯାତ୍ରା"

## — ଗୀତନାଟ୍ୟ —

ବେଶଘରେ ଅଭିନେତାବୃନ୍ଦ ପ୍ରସ୍ତୁତ ହୋଇସାରିବା ପରେ ସମୂହ ପ୍ରାର୍ଥନା କରିବେ । ତା'ପରେ ଭୂମି ପ୍ରଣାମ ଗୁରୁ ପ୍ରଣାମ ତଥା ଦର୍ଶକବର୍ଗଙ୍କ ଉଦ୍ଦେଶ୍ୟରେ ପ୍ରଣାମ କରିବେ ।

## ଦୃଶ୍ୟାନୁକ୍ରମ-ଏକ

(ବାଦ୍ୟବୃନ୍ଦ କେତୋଟି ସଙ୍ଗୀତ ତାନ ମଧ୍ୟରେ ଆରମ୍ଭର ସୂଚନା ଦେବେ । ପ୍ରତ୍ୟେକ ଅଭିନେତା ପୁଷ୍ପାଞ୍ଜଳି ଧରି ରଙ୍ଗଭୂମିର ୭ମ ଓ ୮ମ ମଣ୍ଡଳରେ ଧାଡ଼ି ବାନ୍ଧି ଠିଆ ହେବେ, ଏହି ଧାଡିର ଗୋଟିଏ ପ୍ରାନ୍ତରେ ସୂତ୍ରଧର ଓ ଅନ୍ୟ ପ୍ରାନ୍ତରେ ମୁଖ୍ୟ ପରିଚାଳକ ରହିବେ । ଏହି ଧାଡ଼ିର ଠିକ ମଝିରେ ଦାସକାଠିଆ ଗାୟକ ଓ ପାଳିଆ ରହିଥିବେ । ବାଦ୍ୟବୃନ୍ଦର ଇଙ୍ଗିତରେ ଏହି ଧାଡ଼ିଟି ଦୁଇ ଭାଗରେ ବିଭକ୍ତ ହୋଇ ଗୋଟିଏ ଦିଗରେ ସୂତ୍ରଧର ଓ ଅନ୍ୟ ଦିଗରେ ମୁଖ୍ୟ ପରିଚାଳକଙ୍କ ନେତୃତ୍ୱରେ ଯଥାକ୍ରମେ ୪ର୍ଥ ଓ ୬ଷ୍ଠ ମଣ୍ଡଳ ଅତିକ୍ରମ କରି ମଞ୍ଚାବଳୀର ସମ୍ମୁଖରେ ୨ୟ ମଞ୍ଚ ମଧ୍ୟଭାଗରେ ଭେଟି ପୁଣି ଧାଡ଼ି ବାନ୍ଧି ଦର୍ଶକମାନଙ୍କ ଆଡ଼କୁ ମୁହଁକରି ଠିଆ ହୋଇ ରହିବେ । ଏପରି ଭାବେ ଧାଡ଼ିର ଗୋଟିଏ ପ୍ରାନ୍ତରେ ଗାୟକ ଓ ଆଉ ଗୋଟିଏ ପ୍ରାନ୍ତରେ ପାଳିଆ ରହିଯିବେ । ସଙ୍ଗୀତର ତାନ ବନ୍ଦ ହେବ ଏବଂ ସୂତ୍ରଧର ଦର୍ଶକଙ୍କୁ ନମସ୍କାର କରି କହିବେ—)

ସୂତ୍ରଧର—"ପୁଷ୍ପାଞ୍ଜଳିରସୌ ଦେବ ! ଯାଚୁତେ ପାଦଂସ୍ତୁପସ୍ତବ ।
ନିର୍ବିଘ୍ନ ମଭିନେଷ୍ୟାମି ନାଟକଂ ଭବତ୍ ପ୍ରସାଦତଃ ॥"

ହେ ଜନତା ଜନାର୍ଦ୍ଦନ ! ହେ ନରରୂପୀ ନାରାୟଣ ! ଆପଣଙ୍କ ଆରାଧନା ପାଇଁ, ଆମ୍ଭ ଅନୁଷ୍ଠାନର ଯତ୍‌ସାମାନ୍ୟ ଅର୍ଘ୍ୟ "ବାଲଯାତ୍ରା" ଗୀତିନାଟ୍ୟଟି ବର୍ତ୍ତମାନ ପରିବେଷଣ କରିବାକୁ ଯାଉଛୁ, ସାଦରେ ଗ୍ରହଣ କଲେ ଶ୍ରମ ସାର୍ଥକ ମଣିବୁ । ଦୋଷାଦୋଷ ନିଜ ଗୁଣରେ କ୍ଷମା ଦେବେ ।

(ସମସ୍ତେ ପୁଷ୍ପାଞ୍ଜଳି ଦେବେ ଓ ନମସ୍କାର କରିବା ପରେ ପୁଣି ଧାଡ଼ିର କେନ୍ଦ୍ରରୁ ସୂତ୍ରଧର ଓ ମୁଖ୍ୟ ପରିଚାଳକଙ୍କ ନେତୃତ୍ୱରେ ୨ୟ ମଞ୍ଚର ଦୁଇ ପାର୍ଶ୍ୱରେ ବେଶଘରକୁ ଫେରିଯିବେ । ପୁଣି ସଙ୍ଗୀତର ତାନ ହେବ । ଧାଡ଼ିର ଦୁଇ ପ୍ରାନ୍ତରେ ଥିବା ଗାୟକ ଓ ପାଳିଆ ୨ୟ ମଞ୍ଚରେ ରହିଯିବେ । ସଙ୍ଗୀତ ବନ୍ଦ ହେବ ।

## ଦୃଶ୍ୟାନୁକ୍ରମ-ଦୁଇ

(ରାମତାଳ ଓ ଦାସକାଠିଆ ସହ)

ଗାୟକ ଓ ପାଳିଆ

ପ୍ରଥମେ ବନ୍ଦୁଛି ମୁହିଁ ଶାରଳା ଜନନୀ
ସିଦ୍ଧିଦାୟୀ ମାତା ଆଗୋ ଝଙ୍କଡ଼ ବାସିନୀ ।
ବନ୍ଦୁଛି କଟକ ଚଣ୍ଡୀ ମାତା ମୁଁ ବିନୟ
ଯାହାର ପ୍ରସାଦୁ ନାହିଁ ଆପଦ ଓ ଭୟ ।
କଳି ଗଡ଼ଚଣ୍ଡୀ ମାତା ବନ୍ଦେ କୃଷ୍ଣପୁର
ଆସି ହୁଅନ୍ତୁ ସରବେ ସହାୟ ଆମ୍ଭର ।
ବନ୍ଦୁଛି ମୁଁ ଗଣପତି ବିଘ୍ନରାଜ ଈଶ
ସମସ୍ତ ବିଘ୍ନ ଆମ୍ଭର କରନ୍ତୁ ବିନାଶ ।
ବନ୍ଦେ ବାଣୀଦେବୀ ସରସ୍ୱତୀଙ୍କ ଚରଣ
ବିରାଜନ୍ତୁ ଆମ୍ଭ କଣ୍ଠେ ସଦୟ ହୋଇଣ ।
ଅନ୍ୟ ସର୍ବ ଦେବାଦେବୀ କରି ମୁଁ ବନ୍ଦନା
ଦର୍ଶକଙ୍କ ଆଶୀର୍ବାଦ କରୁଛି କାମନା ।
ଆମ୍ଭର ଏ "ବାଲଯାତ୍ରା" ହେଉଟି ସଫଳ
ତୁମ୍ଭ କୃପା ବିନା ଆମ୍ଭ ନାହିଁଟି ସମ୍ବଳ ।

ଶୁଣ ଶୁଣ ସଜ୍ଜନନେ ଦେଇ ମନକର୍ଣ୍ଣ
"ବାଲିଯାତ୍ରା" ଆତ୍ମକଥା କରିବୁ ବର୍ଣ୍ଣନ ।
ଓଡ଼ିଶା ଇତିହାସର ଏ ଗୌରବ ଗାଥା
ପ୍ରତ୍ୟେକ ନାଗରିକର ଜାଣିବାର କଥା ।
ଦୃଶ୍ୟାଡମ୍ବର ସମ୍ବଳିତ ଏହି ଯାତ୍ରାଟି
ଗୀତିନାଟ୍ୟରୂପେ ଲେଖା ହୋଇଛି ଜାଣିଟି ।
"ବାଲିଯାତ୍ରା" ବିଷୟଟି ଟିର ହିଁ ନୂତନ
ଅପରାଧ ନ ନେବ ହେ ଶୁଣ ସ୍ଥିର ମନ ।

ଶୁକ୍ଳପକ୍ଷ ପୂର୍ଣ୍ଣମୀଟି କାର୍ତ୍ତିକ ମାସର
ପ୍ରତ୍ୟେକ ଓଡ଼ିଆ ପାଇଁ ଦିବସ ଗର୍ବର ।
ରାତ୍ର ପ୍ରତ୍ୟୁଷ ପୂର୍ବରୁ ଶଯ୍ୟାତ୍ୟାଗ କରି
କାର୍ତ୍ତିକ ଶୀତକୁ ତିଳେ ଭ୍ରୂକ୍ଷେପ ନ କରି ।
ଆବାଳ ବୃଦ୍ଧ ବନିତା ଧନୀ କି ଦରିଦ୍ର
ଭେଦଭାବ ଭୁଲି ନ ରଖନ୍ତି ପ୍ରଭେଦ ।
ରାତ୍ର ଥାଉଁ ଥାଉଁ ନଦୀ ଘାଟରେ ହୁଅନ୍ତି ଠୁଳ
ସ୍ନାନାଦି କର୍ମ ସାରିଣ ଦିଅନ୍ତି ହରିବୋଲ ।
କଦଳୀ ବା ସୋଲ ଡଙ୍ଗା ପ୍ରତ୍ୟେକ ଧରିଣ
ପାନ, ଗୁଆ, ଦୀପ ଆଦି ତା'ପରେ ଥୋଇଣ ।
ଦିଅନ୍ତି ଭସାଇ ଜଳେ "ଆକାମାବୈ" କହି
ଆକାମାବୈ, ଆକାମାବୈ ପୁନଃ ମୁଖେ କହି ।
ନାରୀଏ ଦିଅନ୍ତି ଶୁଭ ନାଦ ହୁଳହୁଳି
ତୂରୀ, ଶଙ୍ଖ, ଘଣ୍ଟା, ଗୀତ, ବାଦ୍ୟ କରତାଳି ।
ନାନା ପ୍ରକାରର ବାଣ ଓ ବାଦ୍ୟ ଶବଦେ
କର୍ଣ୍ଣ ଡଠେ ନଦୀଘାଟର ଆନନ୍ଦେ ଗଦଗଦେ ।
ଶତ ଶତ ଶ୍ରେଷ୍ଠ ଶ୍ରେଷ୍ଠ ଡଙ୍ଗା ଘୁଡ଼ି କୂଳ
ପବନରେ ବାହି କ୍ରମେ ହେଉଥାନ୍ତି ଦୂର ।
ଆନନ୍ଦରେ ଅଭିଭୂତ ଶିଶୁ ନରନାରୀ
ବିଦାୟ ନିଅନ୍ତି କ୍ଷଣେ ଗୃହେଁ ନିଜ ଫେରି ।

ପ୍ରିୟ ସଭାଜନେ କି କରିବା ସେ ବର୍ଣ୍ଣନା
ଇତିହାସ ଶ୍ରେଷ୍ଠ ଏ ସଦାପ୍ଲ ସମ୍ବର୍ଦ୍ଧନା ।
ସେହି ଘଟଣାଟି ଏହି ନାଟକେ ବର୍ଣ୍ଣିତ
ଯେଉଁ ମହାନ ଅବସର ବାର୍ଷିକ ପାଳିତ ।
ଅତି ବଡ଼ ଘଟଣାଟି ଘଟିଥିଲା ବୋଲି
ଏ ଜାତି ସ୍ମରୁଛି ତାହା ନ ଯାଇଣ ଭୁଲି ।
କେଉଁ ଦିନୁ ବାଲିଯାତ୍ରା ହେଉଛି ପାଳିତ
ସେହି କଥା କରୁଅଛି ମୁଁ ଉପସ୍ଥାପିତ ।
ଶୁଣ ଶୁଣ ସଭା ଜନେ ଅସଲ କଥାଟି
ସୁଦୂର ପୂର୍ବ ଏସିଆ ଯାହାକୁ କହନ୍ତି ।
ଫିଲିପାଇନ୍ସ୍, ଥାଇଲଣ୍ଡ, ମାଲେସିଆ
କାମ୍ବୋଡିଆ, ଭିଏତ୍‌ନାମ୍, ଇଣ୍ଡୋନେସିଆ ।
ଶ୍ୟାମ, ଯାଭା ଇତ୍ୟାଦିର ପ୍ରାଚୀ ନାମ ଯାହା
ପୁରାଣ ଇତିହାସରେ ପଢିଥିବ ତାହା ।
କାର ନାମ ଯବ ଦ୍ୱୀପ କା ନାମ ମଳୟ
କା ନାମ ସୁବର୍ଣ୍ଣ ଦ୍ୱୀପ କା ନାମ ଶ୍ୟାମଳ ।
ବାଲି ଦ୍ୱୀପପୁଞ୍ଜ ରୂପେ ଥିଲାଟି ବିଦିତ
ଯେଉଁ ନାମ ସହିତରେ ଏ ଯାତ୍ରା ଜଡ଼ିତ ।
ଏ ଦ୍ୱୀପ ସହିତେ ଆମ୍ଭ ବାଣିଜ୍ୟ ସମ୍ପର୍କ
ଥିଲା ବହୁ ପୂର୍ବୁ ଏହା ଜଗତ ବିଖ୍ୟାତ ।
ବର୍ତ୍ତମାନ ସୁଦ୍ଧା ସେ ଦେଶର ନାଗରିକ
ପାଳନ୍ତି ପରବ ଯାହା ସ୍ମୃତିର ପ୍ରତୀକ ।
ଜାଣ ସଭା ଜନେ ଏକ ସାମଞ୍ଜସ୍ୟ ବିଶେଷ
ଯାହା ଅଛି ଅବଧି ଚଳିତ ସେହି ଦେଶେ ।
କାର୍ତ୍ତିକ ପୂର୍ଣ୍ଣିମୀ ହେବା ପୂର୍ବରୁ ସକାଳ
ସେ ଦେଶର ନରନାରୀ ହୁଅନ୍ତି ଯାଇ ଠୁଳ ।
ନୂଆ ନୂଆ ସାଜସଜା କରି ପରିଧାନ
ଆନନ୍ଦ ଉତ୍ସବେ ମାତିଥାନ୍ତି ସେହି ଦିନ ।
ନଦୀ, ପୁଷ୍କରିଣୀ, ହ୍ରଦ, ସାଗର ତୀରରେ
ରଖି ପାନ, ଗୁଆ, ଦୀପ କାଗଜ ଡଙ୍ଗାରେ ।

'ନମ ଖଙ୍କ' କହିଣ ଦେଉ ଅଛନ୍ତି ଭସାଇ
ଠିକ୍ ସେହିପରି ଆମେ 'ଆକାମାବୈ' କହି ।

(ଗାୟକ ସଙ୍ଗୀତ ଏପର୍ଯ୍ୟନ୍ତ ପାଳିଆ ତାର ଧାରା ଅନୁଯାୟୀ ଆବୃତ୍ତି, ଘୋଷା, ତଗଡମାଳ ବୋଲି ଆସୁଥିବ । ଠିକ୍ ଏହି ପଦ ପରେ ପରେ ପାଳିଆ କହିବ)

ପାଳିଆ—ଆ କା ମା ବଇ ଲୋ, ପାନଗୁଆ ଖାଇ ଲୋ
ପାନଗୁଆ ତୋର ଲୋ, ମାସକ ଧରମ ମୋର ଲୋ

ଗାୟକ—କଣ କଣ କଣ କଣ କଣ, କଣ କହିଲୁ, କଣ କହିଲୁ ?

ପାଳିଆ—ଆ କା ମା ବଇ ଲୋ, ପାନଗୁଆ ଖାଇ ଲୋ

ଗାୟକ—ତା ପରେ ପାନ ଗୁଆ ତୋର ଲୋ
ମାସକ ଧରମ ମୋର ଲୋ—ହେଃ, ହେଃ, ହେଃ (ହସିବା)

ପାଳିଆ—କଉ ତମେ ଏମିତି ହସୁଛ କାହିଁକି

ଗାୟକ—ଆରେ ହସିବନି କମିତି କହ, ଆ କା ମା ବୈ ଅର୍ଥ କଣ ବୁଝିଛୁଟି ?

ପାଳିଆ—ମଲାମୋର-କଏ ନ ଜାଣିଛି ଏକଥା
ଆ ହେଲା ଆଷାଢ଼, ଆଉ କା ହେଲା କାର୍ତ୍ତିକ
ମା ହେଲା ମାର୍ଗଶିର ଆଉ ବୈ ହେଲା ବୈଶାଖ
ଏଗୁଡ଼ିକ ଧର୍ମ ମାସ

ଗାୟକ—ଆଉ ଆଉ ଆଠ ମାସ ହେଲା ଅଧର୍ମ ମାସ, ଆରେ ତୋ କଥା ହଉ, ଯଦି ଏହିମାସ ହେଲା ଧର୍ମମାସ କାହିଁକି କାର୍ତ୍ତିକ ମାସ ଛାଡ଼ି ଦେଲେ ଆଉ ଅନ୍ୟ ମାସରେ ଏ ପଦଟି କେତେବେଳେ ହେଲେ ଶୁଣାଯାଏ ନାହିଁ, କାର୍ତ୍ତିକ ମାସ, ପୂର୍ଣ୍ଣିମା, ସେ ପୁଣି କେବଳ ସକାଳୁ ଡଙ୍ଗା ଭସାଇବା ମୁହୂର୍ତ୍ତ ବ୍ୟତୀତ ତ କାହିଁକି କୁହନାହିଁ । ଶୁଣ ଏବେ ମୁଁ କହୁଛି—

ଆ, କା, ମା. ବୈ ଅର୍ଥ ଏଥି କହିବା ବୁଝାଇ
ସଂସ୍କୃତ ଭାଷାରେ ଆନନ୍ଦ ରବ ଏ ଅଟଇ ।

[ଏଠାରେ "ଆନନ୍ଦରବ"ର ଦୃଷ୍ଟାନ୍ତ ଦେବ ଯେପରି "ବନ୍ଦେ ମାତରମ୍" "Hip Hip Hurray" "ହସ୍ ହସ୍ ଜୟ" ଇତ୍ୟାଦି]

'ଆ' ଯେ ଆକାଶ ଏବଂ 'କା' ଅର୍ଥ ପାଣି
'ମା ଭେ' ଅର୍ଥ ଭୟ ନାହିଁ ଭୟ ନାହିଁ ।
ପାଣି ପବନକୁ ଭୟ ନାହିଁ ଯେଉଁ ରବ
ନିର୍ଭୟ ସାହସ ଉତ୍ସାହ ସ୍ୱତଃ ଆଣି ଦେବ ।
"ବାଲିଯାତ୍ରା" ଅଟେ ଆମ ଉତ୍ସବର ନାମ
"ଲୟ କ୍ରାଥଙ୍ଗ୍" ବୋଲି ସେ ଦେଶରେ ନାମ ।
'ଲୟ'ର ଅରଥ କହୁଛି ଦେବାର ଭସାଣ
"କ୍ରାଥଙ୍ଗ୍" ଅର୍ଥ 'ଡଙ୍ଗା' ଅବା ଡଙ୍ଗା ଏହା ଜାଣ ।

ଆମପର ତାଙ୍କର ଏ ମହାନ୍ ପର୍ବଟି
ପାଳିତ ହେଉଛି ଆଜି ନାହିଁ ତ କେଉଁଠି ।
ଆଜି କେତେ ସାମଞ୍ଜସ୍ୟ ତାଙ୍କ ସଙ୍ଗେ ଅଛି
ତାଙ୍କର "ବଡ଼ବୋଦୁର" ବଡ଼ ମନ୍ଦିର ନୁହେଁ କି ?
ଥାଇଲାଣ୍ଡ ବୋଲି ଯେଉଁ ଭୂଖଣ୍ଡକୁ କହୁ
'ଥାଇ' ନାମ ଆସିଅଛି ସଂସ୍କୃତ ସ୍ଥାୟୀରୁ ।
ସେମାନଙ୍କ ମନ୍ଦିରର ଯେ ପୂଜକ ଅଟନ୍ତି
ଏବେ ସୁଦ୍ଧା ପଣ୍ଡା ନାମେ ଖ୍ୟାତ ହେଉଛନ୍ତି ।

ସେହି ଦେଶମାନଙ୍କର କହେ ଇତିହାସ
ସପ୍ତମରୁ ଚତୁର୍ଦ୍ଦଶ ଶତାବ୍ଦି ପର୍ଯ୍ୟନ୍ତ ।
ଶୈଳେନ୍ଦ୍ର ବଂଶୀୟ ରାଜା ପୂର୍ବେ ଥିଲେ ହିନ୍ଦୁ
ତାଙ୍କ ଆଦି ରାଜା ଯାଇଥିଲେ ଏ କଙ୍ଗୋଦୁ ।
କଳିଙ୍ଗ ଉତ୍କ ମିଳଣ ଆମ୍ଭର ଏ ରାଜ୍ୟ
କଙ୍ଗୋଦ ନାମରେ ସେବେ ଥିଲଟି ସାମ୍ରାଜ୍ୟ ।
ଯେ ମହୋଦଧିର ନାମ ବଙ୍ଗୋପ ସାଗର
ସେ ସମୟେ ନାମ ଥିଲା କଙ୍ଗୋଦସାଗର ।
ଏହାର ରହସ୍ୟ ଭେଦ ନାଟକେ ବର୍ଣ୍ଣିତ
ଯେଉଁ ଐତିହାସିକ ସମ୍ପର୍କେ ଦ୍ୱିଦେଶ ଜଡିତ ।
ଆଜ ଯେଉଁ ଘଟଣାଟି ହୋଇବ ବର୍ଣ୍ଣନ
ଷଷ୍ଠ ଶତାବ୍ଦିର କଥା ତାହା ସର୍ବେ ଜାଣ ।

ସେ ସମୟେ ଓଡ଼ିଶାର ଭୌଗୋଳିକାବସ୍ଥା
ସଠିକ ଭାବରେ କାହିଁ ହୋଇନାହିଁ ଲେଖା ।
ରାଜା ଥିଲେ କଙ୍ଗୋଦରେ ଶୈଳୋଦ୍ଭବବଂଶ
ଧନ ଧାନ୍ୟେ ପରିପୂର୍ଣ୍ଣ ଥିଲା ସାରା ଦେଶ ।
ଶୈଳରୁ ଉଦ୍ଭବ ବୋଲି ଶୈଳୋଦ୍ଭବ ନାମ
ହୋଇଥିଲା ସେ ବଂଶର ଏ କଥାଟି ଜାଣ ।
ରାଜା ପ୍ରଜା ଆଦି ଥିଲେ ଶିବ ଉପାସକ
ରାଜଭାଷା ସେ ସମୟେ ଥିଲାଟି ସଂସ୍କୃତ ।

କି କହିବା ସେ ବଂଶୀୟ ରାଜାର ଗୌରବ
ଶିକ୍ଷା ଅବା ସଂସ୍କୃତିର ନ ଥିଲା ଅଭାବ ।
ଶାନ୍ତି ଓ ସମୃଦ୍ଧି ହୋଇଥିଲା ବରିଜିତ
ନୌବାଣିଜ୍ୟ ଥିଲା ଦେଶ ବିଦେଶ ସହିତ ।
ସେ ସମୟେ ଓଡ଼ିଶାର ସାଧୁ ସୌଦାଗରେ
ଯଥେଷ୍ଟ ଖ୍ୟାତି ଅରଜି ଥିଲେ ବିଦେଶରେ ।
ଷଷ୍ଠ ଶତାବ୍ଦୀ ପରେ ସେହି ପରାକ୍ରମୀ ବଂଶ
ହଠାତ ଗଲା କି ଉଭାଇ ଦେଖ ଇତିହାସ ।
ଯଶୋଭୀତ ମାଧବ ରାଜା ଥିଲେଟି ପ୍ରତାପୀ
ଇତିହାସ ପାରି ନାମ ଘୋଷୁଛି ଅଦ୍ୟାପି ।
ସେ ରାଜାଙ୍କ ଥିଲେ ଦୁଇ ସୁଯୋଗ୍ୟ ସୁପୁତ୍ର
ଜ୍ୟେଷ୍ଠ ଧର୍ମରାଜ, ଶୈଳେନ୍ଦ୍ର ମାଧବ କନିଷ୍ଠ ।

ଏତିକ ଭୂମିକା ପରେ ନେବି ମୁଁ ବିଦାୟ
ଏହିଠାରୁ ଆରମ୍ଭିବ ନାଟକ ବିଷୟ ।
ବିଷୟ ବସ୍ତୁଟି ସଠିକ ବୁଝିବାର ପାଇଁ
ପରିବେଷଣ ଶୈଳୀଟି ଦେଉଛି ବୁଝାଇ ।
ପରିବେଷଣ ଶଇଳି ସ୍ୱତନ୍ତ୍ର ଆମ୍ଭର
ନାଟ୍ୟ ଜଗତରେ ଯାର ନାହିଁ ପଟାନ୍ତର ।
ତିନୋଟି ମଞ୍ଚ ବିଶିଷ୍ଟ ବିସ୍ତୀର୍ଣ୍ଣ ପ୍ରାନ୍ତର
ସମସ୍ତଟି ହେଉଅଛି ଅଭିନୟ ସ୍ଥଳ ।

ଏ ମଧ୍ୟ ମଞ୍ଚଟି ମଧ୍ୟ ଉତ୍କଳ ପ୍ରତୀକ
ଆନ ଯେଉଁ ମଞ୍ଚ ଦୁଇ ଅଛୁ ଦୁଇ ପାଖ ।
ଦକ୍ଷିଣ ମଞ୍ଚ, ଦକ୍ଷିଣ ପଶ୍ଚିମ ସୀମାନ୍ତ
ପ୍ରାଚୀନ କୋଶଳ ତହିଁ ଥିଲଟି ବସ୍ତୃତ ।
ବାମପାର୍ଶ୍ୱେ ଦେଖୁଛନ୍ତୁ ଯେଉଁ ମଞ୍ଚ ଗୋଟି
ଉତ୍ତର ପଶ୍ଚିମ ସୀମାନ୍ତ ତହିଁ ଯେ ଥିଲଟି ।
କରି କଙ୍ଗୋଦର କେନ୍ଦ୍ର ଏହି ମଧ୍ୟ ମଞ୍ଚ
ସାଭିନୟ ପ୍ରଦର୍ଶିବୁ ଆମ୍ଭେ ବାଲିଯାତ୍ରା
ଅକପଟେ, ସ୍ନେହେ ଦେଖ ଆହେ ସାଧୁଜନ
ଆସିବେ ଏ କ୍ଷଣି ଏଥି କଙ୍ଗୋଦ ରାଜନ ।

( ନମସ୍କାରାନ୍ତେ ପ୍ରସ୍ଥାନ )

**ଦୃଶ୍ୟାନୁକ୍ରମ—ତିନି**

ନମସ୍କାରାନ୍ତେ ପ୍ରସ୍ଥାନ ପରେ କେବଳ ଢାଲକାଠିଆର ଠକ୍ ଠକ୍ ଶବ୍ଦ ଶୁଭୁଥିଲା—ସଙ୍ଗେ ସଙ୍ଗେ କେତେଜଣ ସୈନ୍ୟ, ଦଳେ ସୌଦାଗରଙ୍କୁ ବନ୍ଦୀଭାବେ ନେଇ ରଙ୍ଗଭୂମିର ପଶ୍ଚାତ ଭାଗରୁ ବାହାରି ପ୍ରାନ୍ତର ମଧ୍ୟ ଦେଇ ୧ମ, ୨ୟ, ୩ୟ ମଞ୍ଚକୁ ସମ୍ମୁଖରେ ଅତିକ୍ରମ କରି ପୁଣି ପ୍ରାନ୍ତର ଦେଇ ରଙ୍ଗଭୂମିର ପଶ୍ଚାତ ଭାଗକୁ ନେଇଗଲେ । ଠକ୍ ଠକ୍ ଶବ୍ଦ ବନ୍ଦ ହେଲା । ପୁଣି ବାଦ୍ୟବୃନ୍ଦ—ତୂର୍ଯ୍ୟନାଦ—ପରେ ପରେ ରାଜା ଯଶୋଭୀତ, ମହାମନ୍ତ୍ରୀ ସତ୍ୟସନ୍ଧ, ଛତ୍ରଧାରୀ, ଦେହରକ୍ଷୀ ବେଶଘରୁ ବାହାରିଲେ । ନେପଥ୍ୟରୁ ଶୁଭିଲା—)

"ସାବଧାନ, ବୀର ଶ୍ରୀ କଙ୍ଗୋଦାଧିପତି, ରାଜନ୍ୟ ମୁକୁଟମଣି, ଅରିନ୍ଦମ ଶ୍ରୀ ଶ୍ରୀ ମହାରାଜା, ମହାସାମନ୍ତ, ଶୈଳୋଦ୍ଭବ କୁଳତିଳକ, ଶିଳାପକଳୋଦ୍ଭେଦୀ, ଖଡ୍ଗଧାରିବର ପ୍ରତାପୀ ଶ୍ରୀ ଶ୍ରୀ ଶ୍ରୀ ଯଶୋଭୀତ ମାଧବରାଜ ବିଜେ । ସାଧୁ ସାବଧାନ ।"

(ପୁଣି ତୂର୍ଯ୍ୟନାଦ—ତାପରେ ବାଦ୍ୟବୃନ୍ଦ—ରାଜାଙ୍କ ଦଳ ୨ୟ ମଞ୍ଚକୁ ଆସିଲେ । ବିଦୂଷକ ନର୍ତ୍ତକୀକୁ ଘେନି ପହଞ୍ଚିବା ଓ ନର୍ତ୍ତକୀକୁ ଇଙ୍ଗିତ ଦେବା । ନର୍ତ୍ତକୀ ନମସ୍କାର କରି ନୃତ୍ୟ ଆରମ୍ଭ

କରିବା । 'କଳିଙ୍ଗ ନୃତ୍ୟ' । ନୃତ୍ୟ ପରେ ସମସ୍ତେ କରତାଳି ଦେବା
(ଓ ରାଜାଙ୍କ ଇଙ୍ଗିତରେ ନର୍ତ୍ତକୀ ନମସ୍କାର କରି ପ୍ରସ୍ଥାନ)

ଯଶୋଧ୍ୱଜ—ମହାମନ୍ତ୍ରୀ,

ଆଜି ନକ୍ଷତ୍ର ଉପଗତ, ସେ ଶୁଭ ମୁହୂର୍ତ୍ତ,
ଯେଉଁ କ୍ଷଣ ପାଇଁ ଅପେକ୍ଷିଛି ମୁହିଁ ସଦା
ଦୁଇପୁତ୍ରେ ଦୁଇଦିଗେ କରିଛି ପ୍ରେରଣ,
ମୋର ଦୁଇ ସେନାଧ୍ୟକ୍ଷ ରୂପେ ।
ବୃଦ୍ଧ ମନ୍ତ୍ରୀ ସତ୍ୟସନ୍ଧ,
ଫେରିଲେ କି ଯୁଦ୍ଧ, ବିଜୟ ଗୌରବେ,
ମୋ କୁଳ ନନ୍ଦନ, ଶୈଳୋଦ୍ଭବ ବୀରେ

(ଗୀତ)

ଆହେ ମନ୍ତ୍ରୀ ସତ୍ୟସନ୍ଧ    ଦେଇଆସ ଯାଇ ଶୁଭ ବାରତା,
ଦୁଇପୁତ୍ର ଦୁଇ ଦିଗେ ଯାଇଛନ୍ତି
ଫେରିଲେ କି ହୋଇ ଶତ୍ରୁ ନିହନ୍ତା ।୧।

ତୋଷଳର ଉତ୍ତମ ରାଜ    ସଙ୍ଗେ ଯୁଝି ଧରମ ରାଜ,
ଛେଦି ତାର ଶିର ଦେଲକି ସେ ଫିଙ୍ଗି
ଟେକିଲା ମୋ କୁଳ ଗୌରବ ଛତା । ୨ ।

ପଣ୍ଡୁବଂଶୀ କୋଶଳ ରାଜା    ଏବେ ହେବ ମୁଁ ତା' ପରଜା ।
ପଣ୍ଡ ହେଲା ତାର ସମସ୍ତ ଚକ୍ରାନ୍ତ
ଶୈଳେନ୍ଦ୍ର କରେ କି ହରାଇ ସତ୍ତା । ୩ ।

ଶତ୍ରୁରେ ମୋ ଦକ୍ଷିଣ ନୟନ    ଦକ୍ଷିଣ ବାହୁର ନର୍ତ୍ତନ,
ମୋର ପୁତ୍ର ଦୁଇ; ହୋଇ ରଣଜୟୀ
ବାହୁଡ଼ନ୍ତୁ ପୂରି ପିତୃ ମମତା । ୪ ।

ନେପଥ୍ୟେ—ଜୟ ମହାରାଜ ଯଶୋଧ୍ୱଜ ମାଧବ ରାଜାଙ୍କ ଜୟ ।
ଜୟ ଯୁବରାଜ ଧର୍ମରାଜ ମାନଧ୍ୱଜଙ୍କର ଜୟ ।
ଜୟ ରାଜକୁମାର ଶୈଳେନ୍ଦ୍ର ମାଧବଙ୍କର ଜୟ ।

(ଏହି ସମୟରେ ରଥ, ଗଜ, ଅଶ୍ୱ, ପଦାତି ସହିତ ଦୁଇ ଭାଇଙ୍କ ଦୁଇଟି ବାହିନୀ, ଦୂରରୁ ଦୁଇ ଦିଗରୁ ଆସୁଥିବାର ଦେଖାଗଲା । ଉଭୟେ ହୟ ମଞ୍ଚ ନିକଟରେ ଆସି ପହଞ୍ଚିଲେ । ରଥରୁ ଧର୍ମରାଜ ଓ ଶୈଳେନ୍ଦ୍ର ମାଧବ ଅବତରଣ କରି ହୟ ମଞ୍ଚ ଉପରକୁ ଆସୁଥିଲେ)

ମହାମନ୍ତ୍ରୀ—ମହାରାଜ,

ଅଦୂରରେ ଶୁଭୁଅଛି ବିଜୟ ଘୋଷଣା,
ଆସୁଛନ୍ତି ବିଜୟୀ କୁମାରେ,
ଧର୍ମରାଜ ମାନସିଂହ ଏବଂ ଶୈଳେନ୍ଦ୍ର ମାଧବ
ବିଜୟୋଲ୍ଲାସେ ମୁଖ ଦିଶଇ ଉତ୍‌ଫୁଲ୍ଲ ।

(ଯଶୋସିଂହ ମଞ୍ଚ ସୋପାନ ନିକଟକୁ ଆଗେଇ ଆସିବା,ଶୈଳେନ୍ଦ୍ର ମାଧବ ଦକ୍ଷିଣ ଦିଗରୁ ଓ ଧର୍ମରାଜ ବାମ ଦିଗରୁ ପ୍ରବେଶ କରିବା, ଉଭୟେ ପ୍ରଣାମ କରିସାରିଲା ପରେ—ପରସ୍ପର ଆଲିଙ୍ଗନ)

ଯଶୋସିଂହ—ମୋ କୁଳମଣ୍ଡନ, କୁହ ବିଜୟ ବାରତା ।

କେଉଁ ଭାବେ ହେଲା ରଣ ?
ଇଷ୍ଟଦେବ ଶିବ ସ୍ମରି, ପିତା ତବ ମୁହିଁ,
ପଠାଇଲି ସିନା ପୁତ୍ରେ, ସମର ଅଙ୍ଗନେ,
କିନ୍ତୁ ପିତାର ହୃଦୟ ମୋର ନ ଥିଲାଟି ସ୍ଥିର,
କାଳେ କିଛି ଅଘଟଣ ଯିବ ପରା ଘଟି ।

(ଦୁଇ ପୁଅଙ୍କୁ ଲକ୍ଷ୍ୟ କରି ଧର୍ମରାଜଙ୍କ ନିକଟକୁ ଆସିଥିଲେ)

ଧର୍ମରାଜ—ପିତୃଦେବ,

କେବଳ ତ ପିତା ନୁହଁ ତୁମେ, ତୁମେ ମହାରାଜ
ମୁହିଁ ତବ ସେନାପତି ମାତ୍ର
ବହୁଦିନୁ ପିତୃଅରି ସଙ୍ଗେ ଯୁଝିବାକୁ ଥିଲା ମୋ ଅଭିଷ୍ଟ
ଶୁଣନ୍ତୁ ଯା' ଘଟିଲା ରଣରେ—

(ଗୀତ)

ତୁମର ଆଦେଶେ ପିତା ଚଳିଲ ସମରେ,
ଭେଟିଲ ମୁଁ ଶତ୍ରୁ ସୈନ୍ୟ, ଉତ୍ତର ସୀମାରେ
ରାଜା ଉନ୍ମତ୍ତ କେଶରୀ
ପଠାଇଥିଲା 'ରଣଙ୍କେ' ସେନାପତି କରି । ୧ ।

ସେ ଚକ୍ରବର୍ତ୍ତୀବ ରଚିଥିଲା ଯେଉଁ ବ୍ୟୂହ,
ଭାବିଥିଲା ବାନ୍ଧିନେବ ମୋତେ ସୈନ୍ୟ ସହ ।
କିନ୍ତୁ ତାର ମନସ୍କାମ
ନୋହିଲା ପୂରଣ ସେ'ତ ହେଲା ମତିଭ୍ରମ । ୨ ।

(ଗଦ୍ୟ)

ଅତି ଦୁର୍ଦ୍ଧର୍ଷ ନିଷ୍ଠୁର ସେ ଜୀବ ।
ଭାବିଥିଲା, ଯେଉଁଭାବେ
ମମ ବୃଦ୍ଧ ପିତାମହ, ସୈନ୍ୟଙ୍କୁ ହାତେ
କରି ପରାଜୟ, କରିଥିଲା କଙ୍ଗୋଦ ବିଜୟ
ଅନୁରୂପ ଭାବେ, ମୋତେ କରିବ ପରାସ୍ତ !

(ଗୀତ)

ମୋର ବ୍ୟୂହଭେଦ ରଣ ନ ପାରିଲା ବୁଝି ।
ପଳାଇବ ବୋଲି ବାଟ ନ ପାଇଲା ଖୋଜି ।
ହତବୁଦ୍ଧି ଇତସ୍ତତଃ
ହୋଇଲା ଯେପରି ନଷ୍ଟେ ହୋଇଥାନ୍ତା ହତ । ୩ ।

ଇଷ୍ଟଦେବ ଶିବେ ସ୍ମରି ଦେଲି ତାକୁ ଛାଡ଼ି ।
ଜଣାଇବାକୁ ତୁମକୁ ଅଇଲି ବାହୁଡ଼ି ।
ଆମ କଙ୍ଗୋଦ ସୀମାନ୍ତ
ନିରାପଦ ଅଛି ରହି ତବ ସୁତ ହସ୍ତ । ୪ ।

ସମସ୍ତେ—ଧନ୍ୟ, ଧନ୍ୟ ଯୁବରାଜ ଧର୍ମରାଜ !

ଧର୍ମରାଜ—ଯେଉଁଭାବେ ଗଲେ ସେ ପଳାଇ,
ଲାଙ୍ଗୁଳ ବିହୀନ ଶୃଗାଳର ସମ,
ଦେଇ ଲମ୍ଫ ଏ ସ୍ଥାନୁ ସେ ସ୍ଥାନ ।
ଶୈଳୋଦ୍ଭବ ସୈନ୍ୟଗଣ, ତାହାର ପ୍ରାସାଦୁ
ହାସ୍ୟରୋଳେ ଫାଟାଇଲେ ସମର ପ୍ରାଙ୍ଗଣ ।

(ସମସ୍ତଙ୍କର ହାସ୍ୟଧ୍ୱନି । ଏ ହାସ୍ୟ ବନ୍ଦ ହେବା ପରେ, ବିଦୂଷକ ପରେ ବୁଝିବାଭଳି, ହଠାତ୍ "ହେଃ, ହେଃ, ହେଃ" ହୋଇ ହସିବା ଆରମ୍ଭ କରିଦେଲେ, କିନ୍ତୁ ମନ୍ତ୍ରୀ ଇଙ୍ଗିତ ଦେବାରୁ ହଠାତ୍ ବନ୍ଦ ହେଲେ)

କଙ୍ଗୋଦର ସମସ୍ତ ସମ୍ପଦ
ଯାହା ସିଏ ନେଇଥିଲେ ଲୁଟି,
ଅଣିଛୁ ଫେରାଇ ମୁହିଁ ସୁଧ ମୂଳ ସହ ।

ଯଶୋଧ୍ୱଜ—ସାଧୁ, ସାଧୁ ଯୁବରାଜ ଧର୍ମରାଜ ମାନଧ୍ୱଜ,
ଶୈଳୋଦ୍ଭବ ବଂଶର ଗୌରବ ।

(ତା ପରେ ଶୈଳେନ୍ଦ୍ରମାଧବ ପ୍ରତି ଲକ୍ଷ୍ୟ କରି)

ହଁ, ଆଜ ତୁମ କଥା ଶୈଳେନ୍ଦ୍ରମାଧବ !
ଜାଣେ ମୁହିଁ ତୁମ ପରାକ୍ରମ ।
କୋଶଳର ସେହି ନାନା ଦେବ,
କୁଟୀଳ, କୁଚକ୍ରୀ ବଡ଼ ଛନ୍ଦ ସେ ଜାଣଇ ।
କିପରି ଭେଟିଲ ତାକୁ ?
କେଉଁ ରୂପେ କଲ ପରାଜିତ ?

ଶୈଳେନ୍ଦ୍ରମାଧବ—ପିତୃଦେବ,
ତୁମ ଶିକ୍ଷାବଳେ ଆଜ ମୁହିଁ ବଳବାନ ।
ଶୁଣନ୍ତୁ ସେ ରଣ ବିବରଣୀ ।

(ଗୀତ)

ଶୁଣ ପିତୃଦେବ, ଭେଟିଲି ଯେ ଭାବ କୋଶଳ ସେନାଙ୍କୁ ମୁହିଁ ହେ,
ଯାଇଥିଲି ଯେବେ, କଙ୍ଗୋଦ ଦକ୍ଷିଣ ସୀମାନ୍ତ ପରୀକ୍ଷା ପାଇଁ ହେ ।
ସହସା ବନରେ ବାଜିଲା ଦୁନ୍ଦୁଭି,
କି ହୋଇଛୁ ତାହା ନ ପାରିଲି ବୁଝି ।
ଆରୋହି ପର୍ବତ ଶିଖରରେ ମୁହିଁ, ଦେଖିଲି ଯାହା ଅନାଇ ହେ ।୧।

କୋଶଳର ନାନାଦେବ ବୃଦ୍ଧ ରାଜା,
ସହସ୍ରାଧିକ ପାଇକ କରି ସଜା,
ଉଡ଼ାଇଣ ଧ୍ୱଜା, ଏକ ବୃକ୍ଷପରେ, ସଇନ ରହିଛନ୍ତି ସହିଁ ହେ ।୨।

ଦୁର୍ଗମ ପର୍ବତ ଅଛୁ ଏକ ଭାଗେ,
ଖରସ୍ରୋତା ନଦୀ ବହେ ଅନ୍ୟ ଭାଗେ,
ନିର୍ଜନ ଅରଣ୍ୟ, ହିଂସ୍ର ଜନ୍ତୁ ପୂର୍ଣ୍ଣ, ଜନ ସମାଗମ ନାହିଁ ହେ ।୩।

ସନ୍ଧ୍ୟାକାଳ ପ୍ରାୟ ହେଲା ଉପଗତ ।
ଆମ ସୈନ୍ୟ ଥିଲେ ଅଳ୍ପ ମୋ ସହିତ ।
କି କରିବି ଚିନ୍ତାକରି ତାଙ୍କ ଗତି ବିଧି ଲକ୍ଷ୍ୟ କରୁଥାଇ ହେ ।୪।

ସଘନେ କଲେ କୋଶଳେ ଜୟଗାନ ।
ସହସ୍ର ହୁଙ୍କାରେ କମ୍ପିଲା ସେ ବନ ।
ଅତି ଅସମର୍ଥ ଥିଲି ସେ ମୁହୂର୍ତ୍ତ, ରଣ କରିବାକୁ ପାଇଁ ହେ ।୫।

(ଗୀତ ପରେ କଥା)

ଠିକ୍ ଏ ସମୟେ, ଶୁଣି ଏ କନ୍ଦନ,
ଏକ ଦଳ ଦନ୍ତାହସ୍ତୀ ହେଲେ ଉପସ୍ଥିତ, ଦକ୍ଷିଣ ଦିଗରୁ ।
ମୁଁ ଥାଏ ଉତ୍ତର ଦିଗେ,
ମୁଷ୍ଟିମେୟ ସେନା ମୋ ଗହଣେ ।
ମତ୍ତ ଗଜେ,
ମର୍ଦ୍ଦିଲେ କୋଶଳ ସୈନ୍ୟ, ପଦ୍ମ ପୁଷ୍କରଣୀ ସମ ।
ଜୀବନ ରକ୍ଷା ନିମନ୍ତେ,
ନାନାଦେବ, ସେନାସହ ନ ଧାଇଣ ରହି,

ଆପଣା ଆପଣା ମଧ୍ୟେ ହୋଇ ଦଳାଦଳି,
ଶୃଙ୍ଖଳା ବହୀନ ମେଷପଲ ପରି,
ଧାଉଁଥାନ୍ତି, ସେହି ଏକମାତ୍ର ପଥେ,
ଯେଉଁଠାରେ ରହିଛି ମୁଁ ଛକ।
ଅରଣ୍ୟ କଣ୍ଟକ·କାଟି, ପଥ ଓଗାଳିଲି।
ଏକ ଏକ କରି ଧରି ଦେଇ ଧକ୍‌କା,
ନିକ୍ଷେପିଲି ସଭିଙ୍କୁ ମୁଁ,
ସେହି ନଦୀବକ୍ଷେ।
ସମସ୍ତଙ୍କୁ କରିଛି ନିପାତ।
ମୋର ମନେହୁଏ,
ବୃଦ୍ଧ ନାନାଦେବ ମଧ୍ୟ, ହୋଇଅଛି ହତ।

ସମସ୍ତେ—ଧନ୍ୟ ଧନ୍ୟ ଶୈଳେନ୍ଦ୍ର ମାଧବ।

(ବିଦୁଷକ ପୁଣିଥରେ ପରେ ବୁଝି, ହସିବା ଆରମ୍ଭ କରିଦେଲେ ଓ ମନ୍ତ୍ରୀଙ୍କ ଇଙ୍ଗିତରେ ବନ୍ଦ ହେଲେ)

ଯଶୋଜିତ—ସାଧୁ, ସାଧୁ ଶୈଳେନ୍ଦ୍ର ମାଧବ।
କ୍ଷେତ୍ର ଅନୁଯାୟୀ କର୍ମ କରିଅଛ ତୁମେ।
କ୍ଷତ୍ରୀୟର ଧର୍ମ,
କଳେ, ବଳେ, କଉଶଳେ କରି ଶତ୍ରୁ ପରାହତ,
ସୁରକ୍ଷା କରିବ କ୍ଷତ୍ରୀ ନିଜ ମାତୃଭୂମି।
ଆଜ ମୁଁ ଗର୍ବିତ ପୁତ୍ରେ ତୁମ କାର୍ଯ୍ୟାଳାପେ।
କଙ୍ଗୋଦର ଧ୍ୱଜା ତୁମେ ରଖିଲ ଉଡ଼ାଇ,
ଶୈଳୋଦ୍ଭବ ବଂଶର ତିଳକ,
ତୁମ ଲାଗି କଙ୍ଗୋଦର କୀର୍ତ୍ତିଧ୍ୱଜା
ଉଡ଼ୁଥିବ କାଳ କାଳ ପାଇଁ
(ମନ୍ତ୍ରୀଙ୍କ ପ୍ରତି) ମହାମନ୍ତ୍ରୀ ସତ୍ୟସନ୍ଧ !
ବିଜୟ ଉତ୍ସବ ପାଇଁ କର ବେଗେ ସକଳ ବ୍ୟବସ୍ଥା।

ମହାମନ୍ତ୍ରୀ—ଯେ ଆଜ୍ଞା ମହାରାଜ।

ଧର୍ମରାଜ—ପିତୃଦେବ, ମହାରାଜ
ତବ ପାଶେ ଅଛି ମୋର ଏକ ନମ୍ର ନିବେଦନ
କଳିଙ୍ଗର ରାଜସୂୟ ସ୍ମୃତି ପାଳନ ଉଦ୍ଦେଶ୍ୟେ
ଅନୁଷ୍ଠିତ କରିବାକୁ ଏକ ମହାଯଜ୍ଞ ।

ଶୈଳେନ୍ଦ୍ର ମାଧବ—କରୁଛି ମୁଁ ସମର୍ଥନ ଜ୍ୟେଷ୍ଠଭ୍ରାତାଙ୍କ ପ୍ରସ୍ତାବ
ଅଶ୍ୱମେଧ ଯଜ୍ଞ ଆଦ୍ୟେ ଏକ ବାଜପେୟ ଯଜ୍ଞ ପାଇଁ ମଧ୍ୟ
ଦିଅନ୍ତୁ ଆଦେଶ ।
ଏହି ଯଜ୍ଞ ଫଳେ, ପ୍ରକଟିବ ସମଗ୍ର ବିଶ୍ୱରେ
କଳିଙ୍ଗର ଯଶ ଗଉରବ
କଳିଙ୍ଗର ସୌଦାଗରଗଣ, ବାର୍ଷିକାବସରେ
ବାହୁଡ଼ିବେ ସ୍ୱଦେଶକୁ ବ୍ରହ୍ମ, ଶ୍ୟାମଳ, ମଳୟ
ସୁବର୍ଣ୍ଣ ତଥା ବାଲିଦ୍ୱୀପୁଁ ଏବେ
ରାଜସୂୟ ଉତ୍ସବ ତଥା ମହାଯଜ୍ଞ ଅନୁଷ୍ଠାନ ଅର୍ଥେ
ଉପଯୁକ୍ତ ସମୟ ତ ଏହି ।

ଯଶୋଧ୍ୱଜ—ଠିକ୍, ଠିକ୍ ! ଉଚିତ ପ୍ରସ୍ତାବ ବାରୁ ପକାଇନ୍ତି ମନେ
ଆସ ମହାମନ୍ତ୍ରୀ !
ପାଇଛ କି କୌଣସି ସମ୍ବାଦ ସୌଦାଗରଗଣଙ୍କ ନିକଟୁ ?

(ଯାଇ ସିଂହାସନରେ ବସିଲେ)

## ଦୃଶ୍ୟାନୁକ୍ରମ—ଗ୍ୱ

(ଠିକ୍ ଏହି ସମୟ ପ୍ରବରୁ ମୁଖ୍ୟ ସୌଦାଗର ୨ୟ ମଞ୍ଚ ସୋପାନ ନିକଟରେ ପହଞ୍ଚି ଦୂତ କାନରେ କହିବ', ଦୂତ ଆସି ମନ୍ତ୍ରୀଙ୍କ କାନରେ କହିବା)

ମହାମନ୍ତ୍ରୀ—ମହାରାଜ, ଦୂତ ଆସି ଦେଇଛି ସମ୍ବାଦ
ସସ୍ତ୍ର ଏକ କଳିଙ୍ଗ ବଣିକ, ଉପସ୍ଥିତ ଅଛି ସିଂହଦ୍ୱାରେ
ଭେଟିବାକୁ ଶ୍ରୀମୁଖ ମହିମା

(ଯଶୋଧ୍ୱଜ ସିଂହାସନ ପରିତ୍ୟାଗପୂର୍ବକ)

ଯଶୋଧୃତ— କି କହିଲ ଆହେ ମନ୍ତ୍ରୀବର
ମୋ ପ୍ରିୟ ବଣିକ ପୁଣି ହସ୍ତ କମ୍ପା ?

(ତା ପରେ ଯୋଗାନ ନିକଟରେ ମୁଖ୍ୟ ସୌଦାଗରଙ୍କୁ ପାଉଛନ୍ତି)

ସ୍ୱାଗତ କରୁଛି, ଆସ
କୁହ, କିସ ଦୁଃଖର କାରଣ
କି ପାଇଁ ମଳିନ ଦିଶେ ତବ ମୁଖ
ଶୀଘ୍ର ଶୀଘ୍ର କର ହେ ପ୍ରକାଶ !

ମୁଖ୍ୟ ସୌଦାଗର—ମହାରାଜ, ବାକ୍ୟ ସ୍ଫୁଟେ ନାହିଁ ମୋର ମୁଖେ
କିପରି କହିବି ଏହି ଦୁର୍ଭାଗ୍ୟ କାହାଣୀ ।

(ଗୀତ)

ଶୁଣ ଆହେ ମହାରାଜ ଫେଡ଼ି କହୁଛି ମୁଁ ଆଜ
କି ଦାରୁଣ ଦୁଃଖ ଘଟିଅଛି ଆମ୍ଭଙ୍କୁ ।
ଆମେ କଳିଙ୍ଗ ନିବାସୀ ଶତ ସୌଦାଗର ମିଶି
ବାର୍ଷିକାବସରେ ଫେରୁଥିଲୁ ଦେଶକୁ ।
ବାଲିଦ୍ୱୀପୁଁ ଶତେକ ନୌକା
କଳିଙ୍ଗ ସାଗରେ ଟେକି ଜାତି ପତାକା ।୧।
ଏ ଦେଶରେ ଆମେ ଯେତେ ଥିଲୁ ବିଦେଶୀ ବଣିକେ
ଏକ ମେଳି ହୋଇ କରିଥିଲୁ ଉଦ୍ୟମ
ପ୍ରଚଣ୍ଡ ଯୋଜନା ଏକ ଶ୍ରୀମୁଖେ କରିବୁ ଭେଟ
ବିଦେଶରେ ରଖିବାକୁ ଦେଶ ସୁନାମ
ଥିଲା ଆମ୍ଭର ଅଭିପ୍ରାୟ
ସୁସମୟେ ଏ ନିମନ୍ତେ ନେଲୁ ବିଦାୟ ।୨।
ଶାନ୍ତ ସାଗର ବକ୍ଷରେ ଆମ୍ଭେ ସର୍ବେ ଆନନ୍ଦରେ
ଆକାମାର୍ଗେ ରବେ ଆଣୁଥିଲୁଟି ଗୋଳ
ଦକ୍ଷିଣ ପୁରୁବ ବାଆ ହୋଇଥିଲା ଆମ୍ଭ ସାହା
ନିଶ୍ଚିନ୍ତ ଥିଲୁଟି ଆମ୍ଭେ ନ ଥିଲା ଗୋଳ
ଇଷ୍ଟଦେବ ନାମକୁ ସ୍ମରି
ବାହିଆଣି ଆସୁଥିଲୁ ଆମ୍ଭର ତରୀ ।୩।

ଅର୍ଦ୍ଧାଧିକ ପଥ ପରେ ଏକ କୃଷ୍ଣା ରଜନୀରେ
ସହସା ଉଠିଲା କାଳ ଦୁର୍ଦ୍ଦିନ ମେଘ,
ଝଡ଼, ଝଞ୍ଜା, ବାତ୍ୟା ସାଥେ ବଜୁଳି ବଜ୍ର ସହିତେ
କେଉଁଠାରୁ ଆସି ଦେଖା ଦେଲାଟି ଶୀଘ୍ର
ଆମ୍ଭେ ହୋଇ ପଡ଼ିଲୁ ସନ୍ତ୍ର
ହଗ ବାଗ ନ ପାଇ ହେଲୁ ବୁଦ୍ଧି ହତ ।୪।

ଘନଘଟା ବରଷାରେ ମୃତ୍ୟୁମୁଖୀ ନଶିଥରେ
କି ପାରିବୁ କରି ଆମ୍ଭ ହଜିଲା ଜ୍ଞାନ
ଅତଳ ଜଳଧି କୋଳେ ଉତ୍ତୁଙ୍ଗ ଲହରୀ ଦୋଳେ
ପାଣି ଛାଡ଼ିଲା ବସିଲୁ ଧନ ଜୀବନ
ଭଗବାନ କରି ଭରସା
ଆତଙ୍କାଶଙ୍କାରେ ପାହି ଗଲାଟି ନଶା ।୫।

(ଗୀତ ପରେ କଥା)

ଶାନ୍ତ, କାନ୍ତ, ଅବଶ, ଉତ୍କଣ୍ଠେ,
ରଜନୀ ପ୍ରଭାତ ବେଳେ,
ଯେବେ ଝଡ଼ ଗଲା ଅପସରି,
ଅବସାନ ହୋଇଲା ବରଷା,
ଦେଖେ ମୁହିଁ ଚତୁର୍ଦ୍ଦିଗେ
ଶୂନ୍ୟ ହରେ ଗୁରି ହଗ୍‌ବଳୟ ।
ନାହାନ୍ତି ମୋ ସାଥି !!
ମୋହରି ପୋତଟି ଛଡ଼ା,
ଆଉ ସବୁ ଯାଇଛନ୍ତି ଉଭାଇ ।
(ଶୋକ କରି)
ବନ୍ଧୁ ଜଣେ ପହଞ୍ଚନ୍ତେ
ପୋତାଶ୍ରୟ "ଚେଲତାଳୋ" ଠାରେ
ନ ପାଇଲି କାହାରି ସନ୍ଧାନ ।
କି ହେଲା ମୋ ବନ୍ଧୁବର୍ଗେ,

କିଛି ମୁହଁ ନ ପାରିବ କହି ।
ସନ୍ଧାନେ ପ୍ରକାଶିଲ ସବ
ଘ୍ରମୁ ପାଶେ ।
(କ୍ରନ୍ଦନ)

ଯଶୋବ୍ରତ—ଓଃ ! ଏ କି ଦାରୁଣ ସମ୍ବାଦ !
କଙ୍ଗୋଦର ସାଧୁ ସୌଦାଗରେ ଲଭିଲେ କି ବିଷମ ଦୁର୍ଦ୍ଦଶା
କି ପାଇଁ ପ୍ରକୃତି ମାତା ହେଲେ ବିପର୍ଯ୍ୟସ୍ତ ?
ମହାମନ୍ତ୍ରୀ !
ଶୀଘ୍ର କର ଆୟୋଜନ, ଚତୁର୍ଦ୍ଦିଗେ ପଠାଇଣ ଚର
ସମଗ୍ର କଙ୍ଗୋଦ ରାଜ୍ୟ ନଦୀ, ହ୍ରଦ, ମହୋଦଧି ତୀରେ
କଳିଙ୍ଗ ନଗର, ଚରିତ୍ର, ପାଲୁର, ବାରୁଣ,
ତାମ୍ରଲିପ୍ତ ଆଦି ସମସ୍ତ ବନ୍ଦରେ
ତନ୍ନ ତନ୍ନେ କର ହେ ସନ୍ଧାନ ।
ଆଜିର ଏ ରାଜକାର୍ଯ୍ୟ, ଏତିକିରେ ହେଲା ସମାପନ ।

ମହାମନ୍ତ୍ରୀ—ଯେ' ଆଜ୍ଞା ମହାରାଜ ।

## ଦୃଶ୍ୟାନୁକ୍ରମ—ପାଞ୍ଚ

(ବାଦ୍ୟବୃନ୍ଦର ସଙ୍ଗୀତସହ ରାଜାଙ୍କ ଦଳର ପ୍ରସ୍ଥାନ । କେବଳ ମହାମନ୍ତ୍ରୀଙ୍କ ଇଙ୍ଗିତରେ ଦୂତ ଯାଇ ଦୁଇ ଚରଙ୍କୁ ଡାକି ଆଣୁଛି ଏବଂ ନିର୍ଦ୍ଦେଶକ୍ରମେ ଦୁଇ ଚର ୧ମ ଓ ୩ୟ ମଞ୍ଚ ଆଡ଼କୁ ଗତି କରି ସେଠାରେ ଲୁଚି ରହୁଛନ୍ତି—ତା ପରେ ମନ୍ତ୍ରୀଙ୍କ ପ୍ରସ୍ଥାନ)

## ଦୃଶ୍ୟାନୁକ୍ରମ—ଛଅ

(୩ୟ ମଞ୍ଚରେ ସଙ୍ଗୀତର ପରିବର୍ତ୍ତନ ସଙ୍ଗେ ସଙ୍ଗେ ହର୍ଷବର୍ଦ୍ଧନଙ୍କ ଦୂତ ଓ ସୈନ୍ୟମାନେ, ସୌଦାଗରମାନଙ୍କୁ ବନ୍ଦୀଭାବେ ଅଡ଼ାଇ ଆଣି ଗଣୁଛନ୍ତି । ପରେ ତୃତୀୟ ମଞ୍ଚରେ ଚଣ୍ଡ ସିଂହ ସିଧାଭାବେ ଠିଆ କରାଉଛନ୍ତି)

ହର୍ଷବର୍ଦ୍ଧନଙ୍କ ଦୂତ —ହେଇଟି, ସମ୍ରାଟ ହର୍ଷବର୍ଦ୍ଧନଙ୍କର ଆସିବାର ସମୟ ହେଇ ଗଲାଣି । ବର୍ତ୍ତମାନ ତୁମମାନଙ୍କୁ ଆଚରଣ ବିଧି ଜାଣିବା ଦରକାର । ଯଦି ସମ୍ରାଟ ତୁମମାନଙ୍କ ଉପରେ ସନ୍ତୁଷ୍ଟ ହୋଇ-ଯିବେ, ତା ହେଲେ ଅବଶ୍ୟ ତୁମମାନଙ୍କୁ ମୁକ୍ତି ଦିଆଯିବ । ନୋହିଲେ······ଆଚ୍ଛା ! ସମସ୍ତେ ଏକସ୍ୱରେ କହିଲ— "ଜୟ ସମ୍ରାଟ ହର୍ଷବର୍ଦ୍ଧନଙ୍କର ଜୟ" । କୁହ···

ସୌଦାଗର ଗଣ—ଜୟ କଙ୍ଗୋଦ ସମ୍ରାଟ ଯଶୋଧ୍ୱଜ ମାଧବ ରାଜାଙ୍କ ଜୟ

ହ-ଦୂତ—କ'ଣ ଅଭ୍ୟାସରୁ କହି ପକେଇଲ କି ? ଯଶୋଧ୍ୱଜ ନୁହେଁ କହିବ ହର୍ଷବର୍ଦ୍ଧନ । ଯଶୋଧ୍ୱଜ ତୁମ ରାଜା ଥିଲେ, ହର୍ଷବର୍ଦ୍ଧନ ତୁମ ରାଜା ହେବେ ବୁଝିଲ ? କୁହ, ସମ୍ରାଟ ହର୍ଷବର୍ଦ୍ଧନଙ୍କର ଜୟ······

ସୌଦାଗରଗଣ—ସମ୍ରାଟ ଯଶୋଧ୍ୱଜ ମାଧବ ରାଜାଙ୍କର ଜୟ ।

ହ-ଦୂତ—ହେଁୟ, ତମମାନଙ୍କୁ ମାଡ଼ ମଡ଼େଇଲାଣି ମୁଁ ଦେଖୁଛି କୁହ, ସମ୍ରାଟ ହର୍ଷବର୍ଦ୍ଧନଙ୍କର ଜୟ

ସୌଦାଗର ଗଣ—ସମ୍ରାଟ ଯଶୋଧ୍ୱଜ ମାଧବ ରାଜାଙ୍କର ଜୟ

ହ-ଦୂତ—ପୁଣି ସେଇ କଥା—ଆଉ ହେବନାହିଁ (ଦୂରକୁ ଗୁହିଁ) ତମେ କଣ ମୋ ଗୁକିରି ଖଣ୍ଡିକ ନେବ କି ? ହେତ୍, ହେତ୍, ହେତ୍, ହେତ୍, ହେତ୍ ।

(ଗୀତ)

ହେତ୍ ହେତ୍ ହେତ୍ କଙ୍ଗୋଦ ପୁଅ, ଆଜ ନେବକି ମୋର ଗୁକିରି
ଶୁଣିବେ ଯଦି ଏ କଥା ଆମ ରାଜା, କରିବେ ମୋତେ ଭିକାରି ।୧।

ତୁମେ ହେଲେ ଏଡ଼େ ଚେଙ୍ଗୁଆ
ଭାଙ୍ଗିଯିବ ମୋ ମୂଳଦୁଆ

ମୋ' ଛଅ ପୁଞ୍ଜା ଛୁଆ, ହେବେ କୁଆଭୁଆ, ରାଣ୍ଡି ରହିଲା ତାଙ୍କର ।୨।

ଫିଙ୍ଗିଦିଅ ତୁମ ଗୁମାନ
ରଖ ଦାନା ମାଲିକ ମାନ

ଶୁଭିଲା କି ନାହିଁ, କାନକୁ ମୋ କଥା (କଣ) ତଳେ ହେଉନି ଖାତିର ।୩।

ଖାଇବ ଯାହାର ଗାଇବ ତାର
ସତ କି ମିଛ କିଛି ନ ବିଚାର
ବିକଲେ ତ ମୁଣ୍ଡ, ଫିଟିବନି ତୁଣ୍ଡ, ହୁଅ ଭୁ ପଛେ ବିକର ।୪।
(ନିଜ ମୁଣ୍ଡକୁ ଦେଖାଇ) ଉପର ମହଲ କରିବ ଖାଲି
ଗୁଡ଼ାଏ (ଖଣ୍ଡି କାଶ କରି) ଶୁଣିବ ବୋଲି
ଆଜ୍ଞା ଓ ଆପଣ, କହି ମନ କିଣି, ବିବେକ ନ ଥିଲା ପରି ।୫।
ଅନ୍ତତଃ ମୋର ଏ ଗୁହାର ପାଇଁ
'ଜୟ' କହିଲେ ବିଗିଡ଼ି ଯିବନି
ରଖିବ ମୋ କଥା, ଦେବ ନାହିଁ ବ୍ୟଥା, ହୋଇନାହିଁ ପର ମୁଁ ମୁକର ।୬।

(ପୁଣି ଦୂରକୁ ଚାହିଁ) ହଉ ହଉ, ଏଥର ମହାରାଜ ବୋଧହୁଏ ଆସୁଛନ୍ତି । ଏଥର ଆଉ ଥଟ୍ଟା ନୁହେଁ କି ଖେଳ ନୁହେଁ । ଖେଲ ହେଲେ ତମ ସାଙ୍ଗରେ ମୋର ବି ଚାଲି ବାହାରି ଯିବ ବୁଝିଲ ! ଏଥର ତୁମେ ସବୁ ଠିକ୍ ଭାବେ କହିବ । ମୁଁ ଯେତେବେଳେ କହିବ ସମ୍ରାଟ ହର୍ଷବର୍ଦ୍ଧନଙ୍କର—ଏତିକରେ ମୁଁ ରହିଯିବି, ତମେ ସବୁ ବଡ଼ ପାଟିରେ ଏକାବେଳକେ କହିବ "ଜୟ" ବୁଝିଲଟି । ବର୍ତ୍ତମାନ ଚୁପ୍ ଥାଅ, ଚୁପ୍ ।

## ଦୃଶ୍ୟାନୁକ୍ରମ—ସାତ

(ସଙ୍ଗୀତ ସହିତ ହର୍ଷବର୍ଦ୍ଧନଙ୍କର ମଞ୍ଚକୁ ଆଗମନ, ପ୍ରବେଶ)

ହ-ଦୂତ—ବୋଲ ମହାରାଜ ହର୍ଷବର୍ଦ୍ଧନଙ୍କର...
(ସମସ୍ତେ ନୀରବ)

ହ-ଦୂତ – ବୋଲ ମହାରାଜ ହର୍ଷବର୍ଦ୍ଧନଙ୍କର...
(ସମସ୍ତେ ନୀରବ)

ହ-ଦୂତ—ବୋଲ ଏକାଙ୍ଗ ଛତ୍ରପତି ମହାରାଜ ହର୍ଷବର୍ଦ୍ଧନଙ୍କର—
(ସମସ୍ତେ ନୀରବ)

ହ-ଦୂତ—(ସମସ୍ତଙ୍କୁ ନୀରବ ହେବା ଦେଖି, ତାପରେ ଏକାକୀ) 'ଜୟ' (ସ୍ୱଗତ) ହେଇତ୍, ଆଜି ଗଲା ମୋ ଗୁହାରି । କାହିଁ ଟିକିଏ 'ଜୟ' କହି ଦେଇଥିଲେ କଣଟା ତମର ବିଗିଡ଼ି ଯାଇଥାନ୍ତା ଭଲା !

ହଉ ଏଇକ୍ଷଣି ମହାରାଜାଙ୍କୁ କହ ତୁମମାନଙ୍କୁ ପାନେ ପାନେ ହଆଇବ । ( ହର୍ଷବର୍ଦ୍ଧନଙ୍କ ଆଡ଼େ ଚାହିଁ ) ପ୍ରଣାମ ମହିମା ! ଏମାନେ ହେଉଛନ୍ତି କଙ୍ଗୋଦର ଜଳଦସ୍ୟୁମାନେ ଆଜ୍ଞା, ତାମ୍ରଲିପ୍ତ ବନ୍ଦରରେ ଲଙ୍ଗର ପକାଇ ରହିଛନ୍ତି । ଲୁଟ ତରାଜ କରି ବହୁ ଧନ ସମ୍ପଦ ଡଙ୍ଗାମାନଙ୍କରେ ବୋଝାଇ କରିଛନ୍ତି, ମୁଁ, ମାନେ, ଆମେମାନେ, ଏମାନଙ୍କୁ ବାନ୍ଧି ପକେଇଚୁ ଆଜ୍ଞା । ଏମାନେ କହୁଛନ୍ତି ତାମ୍ରଲିପ୍ତ, କଙ୍ଗୋଦର ଏବଂ ଲଙ୍ଗର ପକାଇବାର ଅଧିକାର ଏମାନଙ୍କର ଅଛି ।

ହର୍ଷବର୍ଦ୍ଧନ—ଓଃ, ଜାଣିଲି ମୁଁ ସବୁ ।

ଆଚ୍ଛା, ଜଳଦସ୍ୟୁଗଣ-
କେଉଁ ସାହସରେ ମୋର ରାଜ୍ୟେ ହେଲ ଉପଗତ
ଗୌଡ଼ ରାଜା ଶଶାଙ୍କଙ୍କୁ ତଡ଼ି
ଆଜ ତାମ୍ରଲିପ୍ତ ପୋତାଶ୍ରୟ ମୋର କରଗତ ।
ବନାନୁମତିରେ କରିଥିବାରୁ ପ୍ରବେଶ
ଉପଯୁକ୍ତ ଶାସ୍ତି ତୁମେ ପାଇବାର ଯୋଗ୍ୟ ।

ସୌଦାଗର (୧ମ)—କ୍ଷମା କରନ୍ତୁ ମହାରାଜ ! ଆମର ଗୁହାରି ଶୁଣିବା ହେଉ ।

(ଗୀତ)

୧ମ—ଦସ୍ୟୁ ନୁହେଁ ଆମେ ମହିମା, ନୋହୁଁ ଖଣ୍ଡ ତସ୍କର
କଙ୍ଗୋଦ ନିବାସୀ ଆମ୍ଭେ ହେ, ସାଧୁ ସଉଦାଗର ।୧।

୨ୟ—ଦରିଆ ସେପାରି ବିଦେଶେ, ଆମ୍ଭର କାରବାର
ବାଲିଦ୍ୱୀପେ ଆମ ବସତି, ଅଛି ବହୁ କାଳର ।୨।

୩ୟ—ବରଷକୁ ଥରେ ଆସୁହେ, ସ୍ୱଜନ ଦରଶନେ
କେବେ ଘଟିନାହିଁ ଏ ଦଶା, ଯାହା ହେଲା ଏ ସନେ ।୩।

୧ମ—ଏଥର ଦରିଆ ମଝିରେ, ହେଲା ଝଡ଼ ତୋଫାନ
ବାଟ ଭୁଲି ହୋଇ ଆସିଛୁ, ରାହା ନଥିଲା ଆନ ।୪।

୨ୟ—ବେଲଜିଆନୋ ଏବଂ ଫାଲୁର, ଥିଲା ଆମ୍ଭ ଉଦ୍ଦେଶ୍ୟ
ଅଜାଣତେ ଆସି ପଡ଼ିଲୁ ଗଲୁ ଏ ତାମ୍ରଲିପ୍ତ ।୫।

୩ୟ—ଏହି ତାମ୍ରଲିପ୍ତ ବନ୍ଦରେ, ବହୁ ଚଳପ୍ରଚଳ
ହୋଇଅଛୁ ଆମ୍ଭେ ପୂର୍ବରେ, କେବେ ନ ଥିଲା ଗୋଳ ।୬।

୧ମ—ଯୋଡାଶ୍ରୟ ଯେତେ ରହିଛି, କଙ୍ଗୋଦ ସାମ୍ରାଜ୍ୟରେ
ଅନୁମତି ପତ୍ର ନ ହୁଏ, ଲୋଡ଼ା ଏ ସୌଦାଗରେ ।୭।

୨ୟ—ଦିଅ ମୁକ୍ତି ଆମ୍ଭମାନଙ୍କୁ, କହୁ ହୋଇ ବିନୀତ
ସ୍ୱଦେଶକୁ ଆମ୍ଭେ ବାହୁଡ଼ୁ, ହୋଇ ହରଷ ଚିତ୍ତ ।୮।

ହର୍ଷବର୍ଦ୍ଧନ—ହାଃ, ହାଃ, ହାଃ, ହାଃ, ହାଃ

ସୌଦାଗର ୨ୟ—ଅନୁମତି ନ ନେବାର କହୁଛୁ କାରଣ
ଗତବର୍ଷ ପର୍ଯ୍ୟନ୍ତ ତାମ୍ରଲିପ୍ତେ ଆମ୍ଭେମାନେ ହୋଇଛୁ ପ୍ରଚଳ
ଥିଲା ଏହା କଙ୍ଗୋଦ ସାମ୍ରାଜ୍ୟ
କଙ୍ଗୋଦର ସୌଦାଗର ପାଇଁ, କଙ୍ଗୋଦର କୌଣସି ବନ୍ଦରେ
ହୁଏ ନାହିଁ ଆବଶ୍ୟକ, ଅନୁମତି ପତ୍ର ।

ହର୍ଷବର୍ଦ୍ଧନ—ହାଃ, ହାଃ, ହାଃ, ହାଃ, ହାଃ, ମିଥ୍ୟା, ସମ୍ପୂର୍ଣ୍ଣ ମିଥ୍ୟା କଥା ।
ଅସମ୍ଭବ, ଅସମ୍ଭବ ଏହା ।
ଆଜ ନୁହେଁ ତାମ୍ରଲିପ୍ତ କଙ୍ଗୋଦ ଅଧୀନ
କଙ୍ଗୋଦର ଭାଗ୍ୟ ରବି ବୁଡ଼ିଛି ସେଠାରେ ।
ତଥାପି, ମୋର ଅଟେ ଶରଣାର୍ଥୀ କଙ୍ଗୋଦାଧିପତି
ଯେଉଁଧନ ସମଗ୍ର କଙ୍ଗୋଦ, ହେବ ମୋର କରତଳ ଗତ
ସେ ଧନ ମୁଁ ନେଉଛି ଶପଥ ।
ପ୍ରତିଶୋଧ ତଥା ଯୁଦ୍ଧ ପାଇଁ ଆସିଅଛି ଉତ୍ତମ ସୁଯୋଗ ।
ଏହା ହେବ ମୋହ ପାଇଁ ଅବ୍ୟର୍ଥ ଉପାୟ ।
(ଦୂତପ୍ରତି) ଆରେ ଦୂତ !
ଘେନିଯାଅ ଏମାନଙ୍କୁ ଶୀଘ୍ର କାରାଗାରେ
ପଠାଅ ବାରତା କଙ୍ଗୋଦାଧୀଶ ନିକଟେ

ଏକ ଲକ୍ଷ ସ୍ୱର୍ଣ୍ଣମୁଦ୍ରା ବନମଧ୍ୟସ୍ଥ
ଦେବ ମୁଁ ମୁକ୍ତ ଏହ୍ନ ଜଳଦସ୍ୟୁବର୍ଗେ ।
ହାଃ, ହାଃ, ହାଃ, ହାଃ, ହାଃ, (ପ୍ରସ୍ଥାନ ଉଦ୍ୟତ)

ହ-ଦୂତ—ଯେ ଆଜ୍ଞା ମହାରାଜ !
(ସୌଦାଗରମାନଙ୍କ ପ୍ରତି) ଏବେ ଜାଣିଲ ତ ? ଆସ ଦସ୍ୟୁବୃନ୍ଦ (ତାଚ୍ଛଲ୍ୟରେ) କାରାଗାର ମଧ୍ୟରେ କପୋତର ବାନା ଉଡ଼ାଇବା ପାଇଁ ଯଥୋଚିତ ସୁବନ୍ଧ କରାଇ ହଆସିବ, ଆସ ।

## ଦୃଶ୍ୟାନୁକ୍ରମ—ଆଠ

(ସଙ୍ଗୀତ ସଙ୍ଗେ ସଙ୍ଗେ ହର୍ଷବର୍ଦ୍ଧନ, ସୌଦାଗରମାନଙ୍କ ସହ ଦୂତ ଙ୍ଗ୍ରଷ୍ଟ ମଞ୍ଚରୁ ପ୍ରସ୍ଥାନ କଲେ–ପୂର୍ବରୁ ଲୁଚିଥିବା "ଚର" ମଞ୍ଚ ଉପରକୁ ଚଢ଼ି ପ୍ରଥମେ ସେମାନଙ୍କୁ ଲକ୍ଷ୍ୟ କଲା ପରେ)

ଚର–ହେ, ହେ, ହେ, ମିଳିଗଲା ! ! ବର୍ତ୍ତମାନ ମୁଁ ଶୀଘ୍ର ଯାଇ ମହାରାଜାଙ୍କୁ ଏ ସମ୍ବାଦ ଦେଇଦିଏ । ଅନ୍ତତଃ ପୁରସ୍କାର ପ୍ରାପ୍ତି ସୁନିଶ୍ଚିତ । (ପ୍ରସ୍ଥାନ)

## ଦୃଶ୍ୟାନୁକ୍ରମ—ନଅ

(ସଙ୍ଗୀତ ପରିବର୍ତ୍ତନ ସଙ୍ଗେ ୧ମ ମଞ୍ଚ ଆଲୋକିତ ହେଉଛି ଓ କୋଶଳ କନ୍ୟା ସୁମିତ୍ରା ଓ ସହଚରିଦ୍ୱୟ ପଦ୍ମା ଓ ମଞ୍ଜୁଷା ଆଗପଛ ଭାବେ ଧନୁଶର, ତରବାରି ଇତ୍ୟାଦି ଧରି ପ୍ରବେଶ)

ପଦ୍ମା—ରାଜଜେମା ! ହେଇଟି ଦେଖିଲଣି, କଳା ଭ୍ରମରଟିଏ କିପରି ମୃଦୁ ଗୁଞ୍ଜନ କରି ଏ ଫୁଲରୁ ସେ ଫୁଲରୁ ମଧୁ ସଂଗ୍ରହ କରୁଛି ।

ମଞ୍ଜୁଷା—ମଧୁ ସଂଗ୍ରହ ତ କରୁନାହିଁ, ମଧୁପାନ କରୁଛି । ଏ ପୁରୁଷ ଜାତିଟା ପରା ସେଇଆ । ତାଙ୍କ ମନ କୌଣସିଥିରେ ସ୍ଥିର ନୁହେଁ । ସେଇଥିପାଇଁ ତ ଜେମା ଆଦୌ ମଙ୍ଗୁନାହାନ୍ତି ।

ସୁମିତ୍ରା—ଛୁ ! କଅଣ ଯେ ଗୁଡ଼ାଏ କହୁଛ । ଧର ଧନୁଶର ।

ପଦ୍ମା—ଆଗୁ ରାଜଜେମା – ଫୁଲର କାନରେ ମଧୁପ ଗୁଣୁଗୁଣୁ କରି କଅଣ କହୁଛି ଜାଣ ?

ସୁମିତ୍ରା — କଅଣ ?
ମଞ୍ଜୁଷା — ମୁଁ କହିବ, କହିବ, କହିବ ସେଇକଥା
ସୁମିତ୍ରା — କୋଉ କଥା ମ ?
ମଞ୍ଜୁଷା — ସେଇ କଥା ! କହିବ, କହିଦେବ !

(ଗୀତ ଓ ନୃତ୍ୟ)

କହି ଦେବଟି କଥାଟି ଶେଷେ
ମନ କଥା ମତେ ତ ବୁଝି ଆସେ
ଏଣୀନୟନା, ରସରଚନା, ସଖି ଦୋଷ ନ ଧରିବୁ ରୋଷେ ।୧।

ପଦ୍ମା — କାହିଁ ପାଇଁ ତୁ କରୁ ଛଟକ
ଲୁଚ ଯିବକି ତୋର ଝଟକ
କୁନ୍ଦ ଦଶନା, ବିଧୁ ବଦନା, ବିରସ ହସ ତ ଝଲସି ହସେ ।୨।

ମଞ୍ଜୁଷା — ବନେ ବିକଶିତ ହେଲେ ମାଧବୀ
ମଧୁପ କି ନ ଜାଣେ ତା ବାହିବ
ଲୁଚିବ ଯେତେ, ମହକେ ସେତେ, କାହୁଁ ଛୁଟେ ଭ୍ରମର ତା ବାସେ ।୩।

ପଦ୍ମା— ମାରିଦରେ କି ରବି କର ଲୁଚେ
ସିନା ଲୁଚକାଳି ଖେଳ ରଚେ
ଘନଜଘନା, ମୀନନୟନା, ନବ ଯୌବନ ପଣିତୁ ତା ହସେ ।୪।

ମଞ୍ଜୁଷା — ଆସି ପହଞ୍ଚିବ ଆପେ ଭ୍ରମର
ପଥ ଓଗାଳିବୁ ନାହିଁ ତାହାର
ଠାଣି ଗୁହାଣି, ଦେବୁଟି ହାଣି, ପଡ଼ିଯିବ ସେ ତୋ ପ୍ରେମ ଫାଶେ ।୫।

ପଦ୍ମା — ବିଷଧର ବଶ ଯେହ୍ନେ ଗଦରେ
ବଶ ତୁ କରିବୁ ତୋର ପଦରେ
ଅଧର ସୁଧା, ପାନେ ଶରଧା, ସେ ନାଗରବର ପୀରତି ରସେ ।୬।

ମଞ୍ଜୁଷା— ସରିଯିବ ନାହିଁ ଏ ଜହ୍ନ ରାତି
ମାନବ ନାହିଁ ତୋର ରଙ୍ଗ ଛାତି
କେତକୀଗୋରି, ହୁଅନା ଘାରି, ତୋ ବିରହ ବେଦନା ଯିବ ଶେଷେ ।୭।

(ମଞ୍ଜୁଷା ଓ ପଦ୍ମା ଠୋ ଠୋ କରି ହସିବାରେ ଲାଗିଲେ ଠିକ୍ ଏହି ସମୟରେ କୋଶଳର ରାଜା ଶବର ୧ମ ମଞ୍ଚ ଆଡ଼କୁ ଆସୁଛନ୍ତି ।)

ସୁମିତ୍ରା – ଛାଡ଼ ସେ କଥା – ଏଇତ ପିତା ଏଇଆଡ଼େ ଆସୁଛନ୍ତି । ବର୍ତ୍ତମାନ ମୁହଁ ସମ୍ଭାଳି କଥାବାର୍ତ୍ତା କର ।
(ଧନୁଶର ଧରି ଅଭ୍ୟାସ ଆରମ୍ଭ କରିବା, ୧ମ ମଞ୍ଚର ଡାହାଣ ଦିଗ ପଡ଼ିଆ ଆଡ଼କୁ ଶର ମାରି ପକାଇବା- ପ୍ରଥମେ ସଖିଦ୍ୱୟ ତାପରେ ସୁମିତ୍ରା ମଞ୍ଚରୁ ସେଇ ଦିଗକୁ ଦୌଡ଼ି କରି ଦୌଡ଼ା ଦୌଡ଼ି ହେବା ଶବର ୧ମ ମଞ୍ଚରେ ପ୍ରବେଶକରି)

## ଦୃଶ୍ୟାନୁକ୍ରମ – ଦଶ

ଶବର—ଓଃ, ପୁତ୍ରଚିନ୍ତା କରୁଅଛି ମୋତେ ଅସ୍ତବ୍ୟସ୍ତ
ଜୀବନ ମୋହର ହୋଇଗଲା ବିଫଳ
ଧନେ ହେଲେ ସୁଖଶାନ୍ତି ଲଭି ନ ପାରିଲି
ସୁଖ ! ସେ ତ ମରିଚିକା ତୁଲ୍ୟ
ଧାଇଁ ତାର ପଛେ ପଛେ; ଆଶା ମୋର ନୁହଇ ପୂରଣ
କେବଳ – ଏଇମାତ୍ର ମୋହର ଆତ୍ମଜା
(ସୁମିତ୍ରା ଆଡ଼କୁ ଦର୍ଶାଇ)
ସୁମିତ୍ରା ମୋର ଏକମାତ୍ର ପୁତ୍ରତୁଲ୍ୟ ସୁତା
ସକଳ ବିଦ୍ୟାରେ ଅଟେ ସେ ପାରଦର୍ଶିନୀ
ଧନୁର୍ବିଦ୍ୟା ଓ ରଣ କୌଶଳେ
ତା ସହିତେ ପୁତେ ଅସମର୍ଥ – ଅବଶ୍ୟ
କିନ୍ତୁ ହୋଇଅଛି ସେ ପ୍ରାପ୍ତ ଯୌବନା
ବିବାହ ସମୟ ତାର ହେଲା ଉପସ୍ଥିତ
ହୁଏ ତ ବିବାହ ପରେ କନ୍ୟା ମୋର ଚାଲିଯିବ
ଶ୍ୱଶୁର ଆଳୟେ – ତାପରେ – ତାପରେ
ତାପରେ ମୁଁ ରହିବି ଏକାକୀ
କୋଶଳ ରାଜନ ଶବର ମୁଁ ହୋଇ ପ୍ରତପତିଶାଳୀ
ରାଜ୍ୟ ଓ ବିଭବେ, ରହିବି ଏକାକୀ
ନିଃସନ୍ତାନ ରୂପେ—ନା, ନା

ଆଉ କିଛି ଭାବି ନ ପାରଇ (ମୁଣ୍ଡରେ ହାତ ଦେଇ ବସିବା)
(ସୁମିତ୍ରା ପ୍ରବେଶ କରି)

ସୁମିତ୍ରା — ପ୍ରଣାମ ହେଉନ୍ତୁ ପିତା ।

ମନୁ ଚିନ୍ତା କରିଦିଅ ଦୂର
ପିତୃଦେବ ! ତବ ଆଶୀର୍ବାଦେ ମୁହିଁ ଲଭିଛି ସମର୍ଥ
ପିତାସ୍ୱର୍ଗ, ପିତା ଜପ, ପିତା ମୋର ତପ
ପିତାଙ୍କ ଚରଣ ବିନା ନ ଜାଣଇ କିଛି
କରନ୍ତୁ ଆଦେଶ !
ଅଚିରେ ଲଢିବ ଯାଇଁ ପିତୃ ଅରି ସଙ୍ଗେ ।

ତ୍ତବର — (ଉଠିଆସି)

ମା, ମୋର, ତୋତେ ପାଇ ମୋର ଏ ଜୀବନ
ହୋଇଅଛି ଧନ୍ୟ । ଶୋକ ମୋର ଯାଇଛି ଉଭାଇ ।
କଙ୍ଗୋଦର ଶିଶୁ ମୁଁ ଯେ ନପାରଇ ଦେଖି
ସେ ଦେଶର ସୌଦାଗରେ ଲଂଘି ·ପାରାବାର
କରନ୍ତି ବାଣିଜ୍ୟ, କୃଷି ବାଲଦ୍ୱୀପ ଠାରେ
କଙ୍ଗୋଦର ରାଜକୋଷ ଆଜି
ଧନଧାନ୍ୟେ ପରିପୂର୍ଣ୍ଣ — ତାହାଙ୍କ ପ୍ରସାଦୁଁ
ସେ ଦିନ ମୋ ପିତୃ ନାନାଦେବେ
ଲାଞ୍ଛିତ, ଅପମାନିତ, ପରାଜିତ କରି
କଙ୍ଗୋଦ ରାଜନ ନିକ୍ଷେପିଲା ଜଳେ
ଓଃ କି ଅପମାନ,
ଈର୍ଷା-ବହ୍ନି ଜଳୁଛି ହୃଦୟେ
କଳେ, ବଳେ, କୌଶଳେ, କଙ୍ଗୋଦକୁ କଲେ ପରାଭୂତ
ଜୀବନ କାମନା ମୋର ହୋଇବ ପୂରଣ ।

ସୁମିତ୍ରା — ପିତୃଦେବ !

ଏ ସ୍ଥିର କଥାରେ କିମ୍ପା ହେଉଅଛ ଭାଳି,
ଏବେ ଶୁଣନ୍ତୁ ମୋର ଗୁହାରି ।

(ଗୀତ)

ଶୁଣ ପିତା କୋଶଳ ଅଧୀଶ୍ୱର,
ଯାହା କହୁଛି ଦୁହିତା ତୁମ୍ଭର ।୧।
ନାମ ରଖିଅଛ ମୋର ସୁମିତ୍ରା,
ଅରି ଦମନେ ମୁଁ ଅପରାଜିତା ।୨।
କରାଇ ଥରେ ମୋତେ ସେନାପତି,
ପରୀକ୍ଷା କର କୋଶଳାଧିପତି ।୩।
ସେହି କଙ୍ଗୋଦ ରାଜା ଯଶୋଖ୍ୟାତ,
ତୁମ ଠାରୁ ଶତ୍ରୁ ମୋତେ ବିଦିତ ।୪।
ତୁମ ଅଭିଷ୍ଟ କରିବ ପୂରଣ,
ନୋହିଲେ ତେଜିବ ମୁଁ ଏ ଜୀବନ ।୫।
କରୁଅଛି ପଦ ଛୁଇଁ ଶପଥ,
କଙ୍ଗୋଦ ହେବ ମୋର ଅଧିକୃତ ।୬।
ଆଉ ନକରିଣ କାଳ ବିଳମ୍ବ,
ଦିଅ ଆଦେଶ ଭାଙ୍ଗେ ମୁଁ ତା ଦମ୍ଭ ।୭।
ରଣେ କରିବ ନଷ୍ଟେ ତାକୁ ହତ,
ପ୍ରମାଣିବ ଯେସନ ଯୋଗ୍ୟ ସୁତ ।୮।

ହିବର—ସାଧୁ, ସାଧୁ ଦୁହିତା ସୁମିତ୍ରା ।
ମୋର ଆଶୀର୍ବାଦ ରହିବ ତୋ ସାଥେ
କର ଶୀଘ୍ର ରଣେ ଆୟୋଜନ ।
(ସ୍ୱଗତ) ଏବେ ଜାଣେ ମନୋବାଞ୍ଛା ହୋଇବ ପୂରଣ ।
ରହି କନ୍ୟା ପଶ୍ଚାତରେ
ରଣେ ତାକୁ କରିବ ସାହାଯ୍ୟ
(ହିବର ପ୍ରସ୍ଥାନ—ପଦ୍ମା ମଞ୍ଜୁଷା ୧ମ ମଞ୍ଚରେ ପ୍ରବେଶ କଲେ)

ସୁମିତ୍ରା—କିଏ ଅଛ ବୀରଗଣେ
କାଲି ପ୍ରାତୁଃ କଙ୍ଗୋଦ ସୀମାନ୍ତେ
ହେବ ରଣ ସଜ୍ଜା
ମୋର ଏ ଆଦେଶ

ସାଜ ପାଇକ, ରାଉତ, ମାହୁନ୍ତ ଖଣ୍ଡାୟୁଦ୍ଧ ଖାତରେ
କଙ୍ଗୋଦେ ଧସାଇ ପଶିମିବା ଧାଡ଼କାରେ ।
ନ କର ବିଳମ୍ବ ।
ସହଚରୀ ଗଣ ! ତୁମେ ଦୁହେଁ ଛନ୍ଦ ବେଶେ
ମୋହପାଶେ ରହିଥିବ ସଦା ।

(ସଙ୍ଗୀତ ସହିତ ସୁମିତ୍ରା, ପଦ୍ମା, ମଞ୍ଜୁଷାଙ୍କର ପ୍ରସ୍ଥାନ)

## ଦୃଶ୍ୟାନୁକ୍ରମ—ଏଗାର

(ପ୍ରଥମ ମଞ୍ଚରୁ ସୁମିତ୍ରା, ପଦ୍ମା ଓ ମଞ୍ଜୁଷାଙ୍କର ପ୍ରସ୍ଥାନ ପରେ ପରେ ସେଠାରେ ପୂର୍ବରୁ ଲୁଚି ରହିଥିବା ଚର ମଞ୍ଚ ଉପରକୁ ଆସି ସେମାନଙ୍କ ଆଡକୁ ଲକ୍ଷ୍ୟ କରି—ପରେ ଦର୍ଶକମାନଙ୍କ ଆଡ଼କୁ ଦେଖାଇ)

ଚର (୧ମ)—(ପ୍ରଥମେ ଗୁଡ଼ାଏ ହସିସାରି)
ବାଃ, ବାଃ, ବାଃ,
ଆସିଥିଲି କୋଉଥିପାଇଁ, ଆଉ ପାଇଲି କଅଣ ? ଯାଏଁ ଶୀଘ୍ର ଏ ସମ୍ବାଦ ମହାରାଜାଙ୍କୁ ଜଣାଇ ମୋର ପୁରସ୍କାର ନିଏ—
ହେଃ, ହେଃ, ହେଃ,
କୋଶଳର ରାଜଜେମା ନିଜେ ସେନାପତି ବେଶରେ ସୈନ୍ୟ-ଗୃଳନା କରିବେ । ହେଃ, ହେଃ, ହେଃ, ହାରିବେ ତ ନିଶ୍ଚୟ—ଆଉ ହାରିକରି ସେ ତ ରଜାଙ୍କର ହେବେ ଆଉ ଅନ୍ତତଃ ସେଇ ଯୋଉ ସହଚରୀ ଅଛନ୍ତି, ତାଙ୍କ ଭିତରୁ କଅଣ ଆମକୁ ଗୋଟେ ଭାଗ ମିଳିବନି ? ଯାଉଛି, ଶୀଘ୍ର ଏ ଖବରଟା ଦେଇଦିଏ । (ପ୍ରସ୍ଥାନ ଉଦ୍ୟତ ହୋଇ ପୁଣି ଫେରି ପଡ଼ି) ଏ ମାଇକିନିଆ ଝିଅ ଯୁଦ୍ଧ କରିବାକୁ ଆସୁଛନ୍ତି, ଏ କଥା କହିବିନି—ମୋ କଥା ହୁଏତ ପାସଙ୍ଗରେ ପକେଇବେନି, ପୁଣି କାଳେ ମୋ ଭାଗଟା ଆଗରୁ ବୁଡ଼ିଯାଇ ପାରେ— କଣ କହୁଛନ୍ତି ଆଜ୍ଞାମାନେ
ଗଲି, ଗଲି, ଗଲି—

(ଖୁବ୍ ଜୋରରେ ଏକ ନିଶ୍ୱାସରେ ପ୍ରସ୍ଥାନ)

## ଦୃଶ୍ୟାନୁକ୍ରମ—ବାର

(ସଙ୍ଗୀତ ପରିବର୍ତ୍ତନ ସଙ୍ଗେ ସଙ୍ଗେ ଯଶୋଧିତ ରାଜା, ମନ୍ତ୍ରୀ ଧର୍ମଧ୍ୱଜ, ଶୈଳେନ୍ଦ୍ର ମାଧବ, ବିଦୂଷକ, ମୁଖ୍ୟ ସୌଦାଗର ଓ ଚରଦ୍ୱୟ ମଞ୍ଚକୁ ପ୍ରବେଶ କଲେ, ପରେ ହର୍ଷବର୍ଦ୍ଧନଙ୍କ ଦୂତ ଆସି ଅପେକ୍ଷା କଲା ।)

ଯଶୋଧିତ—ମହାମନ୍ତ୍ରୀ ସତ୍ୟସନ୍ଧ !
କୁହ ସମସ୍ତ ସମ୍ବାଦ
କି ହୋଇଲା ମୋର ସୌଦାଗରେ
ଅଛନ୍ତି ତ ସର୍ବେ କୁଶଳରେ ।

ମହାମନ୍ତ୍ରୀ—ମହାରାଜ !
ବିଜୟ ଉଲ୍ଲାସେ ଆଜ କଙ୍ଗୋଦ ନିବାସୀ
ଶାନ୍ତିସୁଖେ ନିରଳସେ ଯାପନ୍ତି ଜୀବନ
ନାହିଁ ଭୟ, ନାହିଁ ଦୁଃଖ, ଦୈନ୍ୟ ଅନାଟନ
ଋଦ୍ଧିମନ୍ତ ତୁମର ଶାସନେ ।
ସୌଦାଗରମାନଙ୍କ ବିଷୟ
ଉପସ୍ଥିତ ଚରଠାରୁ ପଚାରିବ ଜଣା ।

ଯଶୋଧିତ—କୁହ ଚର କି ସମ୍ବାଦ ଆଣିଅଛ ତୁମ୍ଭେ
ଶୀଘ୍ର କର ବ୍ୟକ୍ତ ।

୧ମ ଚର—ମହାରାଜ !
ତବାଦେଶେ ହୋଇଣ ପ୍ରେରିତ
କଙ୍ଗୋଦ ସାଗର ତୀରେ, ଗମିଲି ମୁଁ ଦକ୍ଷିଣ ଦିଗକୁ
ଲଙ୍ଘି ବନଗିରି ଆଉ ବାରୁଣ ବନ୍ଦର
କୋଶଳ ରାଜ୍ୟରେ ଯାଇଁ ହେଲି ଉପସ୍ଥିତ
କଙ୍ଗୋଦର ସୌଦାଗରଙ୍କର
ନପାଇଲି କୌଣସି ସନ୍ଧାନ
କିନ୍ତୁ !

ଯଶୋଧିତ—କିନ୍ତୁ କଣ ଚର ?

୧ମ ଚର – କୋଶଳର ଚନ୍ଦ୍ରବଂଶୀ ରାଜା
କଙ୍ଗୋଦ ବିଜୟରୁ ଆଶେ
ଦକ୍ଷିଣ ସୀମାନ୍ତେ, କରିଅଛୁ ଘୋର ରଣ ସଜ୍ଜା

ଯଶୋଧ୍ୱଜ – ପାଇଲି ସୁଯୋଗ
ଅତର୍କିତେ ଆକ୍ରମଣ ପାଇଁ
ହାଃ, ହାଃ, ହାଃ, ହାଃ, ହା
ନିର୍ଲଜ ତସ୍କର, ଭୁଲିନାହିଁ ନାନାଦେବ କଥା
ଆସ୍ତ ! ମୋର ଶୈଳେନ୍ଦ୍ର ମାଧବ
ଦେବ ତାକୁ ଉପଯୁକ୍ତ ଶାସ୍ତି ।

ଶୈଳେନ୍ଦ୍ରମାଧବ—ପିତା ! ଦକ୍ଷିଣର ସୁଦୃଢ଼ ସୀମାନ୍ତେ
କଙ୍ଗୋଦର କଳିଙ୍ଗ ବାହିନୀ
ପ୍ରତିକ୍ଷଣେ ଅଛନ୍ତି ପ୍ରସ୍ତୁତ,
ଦିଅନ୍ତୁ ଆଦେଶ
ଶତ୍ରୁ ଗର୍ବ କରିଆସେ ଖର୍ବ

ଯଶୋଧ୍ୱଜ—ଶୁଭସ୍ୟ ଶୀଘ୍ରଂ
ଯାଅ ବତ୍ସ, ଇଷ୍ଟ ଦେବ ସ୍ମର
(ଶୈଳେନ୍ଦ୍ରମାଧବ ଆଶୀର୍ବାଦ ନେଇ ପ୍ରସ୍ଥାନ)

ଯଶୋଧ୍ୱଜ—(୨ୟ ଚରକୁ) ଆଉ ତୁମ କଥା

୨ୟ ଚର—ମହାରାଜ, କଙ୍ଗୋଦର: ଶ୍ରୀର ସୌଦାଗରେ
ତାମ୍ରଲିପ୍ତ ବନ୍ଦର ମଧ୍ୟରେ
ହର୍ଷବର୍ଦ୍ଧନ ହାତ ହୋଇଛନ୍ତି ବନ୍ଦୀ

ଯଶୋଧ୍ୱଜ—ବନ୍ଦୀ ?

୨ୟ ଚର – ପଠାଇଛୁ ସ୍ୱତନ୍ତ୍ର ଦୂତକୁ
ଉତ୍କୋଚ ଗ୍ରହଣ ଆଶେ
ସିଂହଦ୍ୱାରେ କରିଛୁ ଅପେକ୍ଷା

ଯଶୋଜିତ — ମନ୍ତ୍ରୀ ତାଙ୍କୁ ଡକାଅ ସତ୍ୱର ।

(ମନ୍ତ୍ରୀ ୨ୟ ଚରଙ୍କୁ ଇଙ୍ଗିତ ଦେଲେ । ୨ୟ ଚର ଯାଇ ହର୍ଷବର୍ଦ୍ଧନର ଦୂତକୁ ଡାକିଲା, ପୁଣି ଉଭୟ ପ୍ରବେଶ କଲେ)

## ଦୃଶ୍ୟାନୁକ୍ରମ — ତେର

ହର୍ଷବର୍ଦ୍ଧନଙ୍କ ଦୂତ—(ନମସ୍କାର କରି) (ପତ୍ର ପାଠ)

କଙ୍ଗୋଦାଧିପତି, ମହାରାଜ ଯଶୋଜିତ ମାଧବ ରାଜନ
କଙ୍ଗୋଦର ନାଗରିକ, ଜନଶତ ଜଳଦସ୍ୟୁ
ସୌଦାଗର ବେଶ ସାଜି
ତାମ୍ରଲିପ୍ତ ବନ୍ଦର ମଧ୍ୟରେ, ପଡ଼ିଛନ୍ତି ଧରା
ଯଦି ଇଚ୍ଛା ଫେରି ପାଇବାକୁ ଏହି ଦସ୍ୟୁବୃନ୍ଦ
ଅବିଳମ୍ବେ ଦେବ ଜୋରିମାନା
ଏକ ଲକ୍ଷ ସ୍ୱର୍ଣ୍ଣମୁଦ୍ରା
(ନିଜକୁ ଦେଖାଇ) ଏଇ ଦୂତ ହସ୍ତେ
ଏ କଥାରୁ ଅନ୍ୟଥା ହୋଇଲେ
ଉପଯୁକ୍ତ ଶାସ୍ତି ପାଇଁ ହୋଇବ ପ୍ରସ୍ତୁତ
(ପତ୍ରଖଣ୍ଡି ଯଶୋଜିତଙ୍କୁ ବଢ଼ାଇ ଦେବା)

ଯଶୋଜିତ—(ପତ୍ର ଫିଙ୍ଗିଦେଇ)

ବନ୍ଦକର ଏ ପ୍ରଳାପ ଦୂତ !
ଦେଖୁଛୁ ଔଦ୍ଧତ୍ୟ, ସେହି ହର୍ଷବର୍ଦ୍ଧନର
ପାଉଅଛୁ ବୁଝି ।
ଗୌଡ଼ରାଜା ଶଶାଙ୍କଙ୍କୁ ଏହି ତାମ୍ରଲିପ୍ତ
ଚୁକ୍ତିବନ୍ଧେ ଦେଇଥିଲେ ପିତା
ତା'ଠାରୁ ଛଡ଼ାଇ ପୁଣି ଏତେ ବାହାଦୁରି
ମନେ ସେ କରୁଛି, ଶଙ୍କିଯିବ ମୁହିଁ ତା ଧମକେ
ଅସମ୍ଭବ, ଅସମ୍ଭବ ଏହା
କଙ୍ଗୋଦ ସନ୍ତାନ ପକ୍ଷେ, ଅତ୍ୟନ୍ତ ଦୁରୁହ

ଧର୍ମରାଜ—କି ଅଦ୍ଭୁତ ବଚନ ଏହି ହର୍ଷବର୍ଦ୍ଧନର
କଙ୍ଗୋଦର ସାଧୁ ସୌଦାଗରେ
ଦେଲା ଆଖ୍ୟା ଜଳଦସ୍ୟୁ ବୋଲି
ପଥଭ୍ରଷ୍ଟ, ବାତ୍ୟା ପ୍ରପୀଡ଼ିତ, ସରଳ ବଣିକେ
ନ ପ୍ରକାଶି, ସହ ଅନୁଭୂତି, କରିଅଛୁ ବନ୍ଦୀ ?
ଛି, ଛି, ସାଧାରଣ ସୌଜନ୍ୟତା ଜ୍ଞାନ ଶୂନ୍ୟ ତାହାଠାରେ
କପରି ଜାଣିବ ସିଏ ତାତ୍ପର୍ଯ୍ୟ ଓ ଅତିଥି ସତ୍କାର
ନୀଚମନା, କ୍ଷୁଦ୍ରହୃଦ ତାର । ନିଜେ ଦସ୍ୟୁ ବୋଲି
ସଭିଙ୍କୁ ସେ ଦସ୍ୟୁରୂପେ କହୁଛି ବର୍ବର ! ! !

ହ-ଦୂତ—ମହାରାଜ, କଙ୍ଗୋଦାଧୀଶ୍ୱର,
ଜାଣି ନାହାନ୍ତି ଆପଣ,
କେଡ଼େ ପରାକ୍ରମୀ ରାଜା ସେ ହର୍ଷବର୍ଦ୍ଧନ ।
ମାନିଯାଅ ଶୀଘ୍ର ।
ଏକ ଲକ୍ଷ ସ୍ୱର୍ଣ୍ଣମୁଦ୍ରା, ଦେଇଣ ସତ୍ୱର
ମୁକ୍ତ କରି ଆଣ ତବ ସୌଦାଗର ବୃନ୍ଦେ ।

ଯଶୋଧ୍ୱଜ—ଚୁପ୍ କର ଦୁଷ୍ଟ ।
ଶ୍ରେଷ୍ଠ ମୁଖେ ବଡ଼ କଥା ନ ଦିଶେ ସୁନ୍ଦର ।
ଯାଅ କହିଦିଅ, ଯୁଦ୍ଧ ପାଇଁ ସଦା ମୁଁ ପ୍ରସ୍ତୁତ ।

ବିଦୂଷକ—ହିଁ, ହିଁ, ଯାଅ ଯାଅ କହିଦିଅ
ଯାଅ, ଆରେ ଯାଉଛୁ କି ନାହିଁ ?
(ହର୍ଷବର୍ଦ୍ଧନର ଦୂତ ପଛେ ପଛେ ବିଦୂଷକ ଗୋଡ଼ାଇ ପ୍ରସ୍ଥାନ)

ଧର୍ମରାଜ—ଉଚିତ ହୋଇଛି ପିତା ।
ଜାଣୁ ସେହି କଙ୍ଗୋଦ ପ୍ରଭାବ ।
ଶୈଳେନ୍ଦ୍ରମାଧବ ଥିବ ଦକ୍ଷିଣ ପ୍ରାନ୍ତରେ,
ଧରି କଳିଙ୍ଗ ବାହିନୀ ।
ଘେନି ଉତ୍କଳସେନା ମୁଁ ଚଳିଲି ଉତ୍ତର ପ୍ରାନ୍ତକୁ ।
ଥାଉ ପ୍ରାଣ ମର ଏ ଶରୀରେ,
ନ ଦେଇ ସୂଚ୍ୟଗ୍ର ଭୂମି ଅରାତିର କର,
ମୁକ୍ତ କରି ଆଣିବି ମୁଁ ପ୍ରିୟ ସୌଦାଗରେ ।

ମହାମନ୍ତ୍ରୀ—ସାଧୁ, ସାଧୁ ଯୁବରାଜ ।

ଯଶୋଧ୍ୱଜ—ଗର୍ବିତ ମୁଁ ତୁମ ଲାଗି ପୁତ୍ର, ଚାଲ ବେଗ କରି ।

ରାଜକାର୍ଯ୍ୟ ସମାପନ ଏତିକରେ ଆଜି ।

(ସଙ୍ଗୀତ ସହ ସମସ୍ତଙ୍କର ପ୍ରସ୍ଥାନ – ୨ୟ ମଞ୍ଚ ଅନ୍ଧକାର)

## ଦୃଶ୍ୟାନୁକ୍ରମ – ଚଉଦ

(ସଙ୍ଗୀତ ପରିବର୍ତ୍ତନ ଓ ରଣସଜ୍ଜାର ବାଦ୍ୟ । ତିନୋଟି ଯାକ ମଞ୍ଚ ଆଲୋକିତ – ଏକ ସମୟରେ ୧ମ ମଞ୍ଚକୁ ବୀର ପୁରୁଷ ବେଶରେ ସୁମିତ୍ରା, ସଖିଦ୍ୱୟ ଓ ସୈନ୍ୟସହ ।। ୨ୟ ମଞ୍ଚକୁ ଧର୍ମରାଜ, ଶୈଳେନ୍ଦ୍ର ମାଧବ ପୃଥକ୍ ସୈନ୍ୟସହ । ୩ୟ ମଞ୍ଚରେ ହର୍ଷବର୍ଦ୍ଧନ ତାର ସୈନ୍ୟ ସହ, ସମସ୍ତେ ପ୍ରବେଶ କରି ସଜ୍ଜିତ ଭାବେ ରହିଲେ, ସଙ୍ଗୀତ ବନ୍ଦ ହେଲା ।)

ଧର୍ମରାଜ—ଦେଖୁଛ କନିଷ୍ଠ ଭ୍ରାତା, ଶୈଳେନ୍ଦ୍ର ମାଧବ

ତୋଷଳର ସୀମାପରେ

ଦୁଷ୍ଟ ହର୍ଷବର୍ଦ୍ଧନର ରଣସଜ୍ଜା

ଶୈଳେନ୍ଦ୍ର ମାଧବ—ଆଉ ଏଣେ ଦେଖ, ଜ୍ୟେଷ୍ଠଭ୍ରାତ

କୋଶଳର ଉତ୍ତର ସୀମାନ୍ତେ

ରହିଛନ୍ତି ତବର ବାହିନୀ ।

ହର୍ଷବର୍ଦ୍ଧନ—କନୋଜ ନରେଶ,

ଯଶୋଧ୍ୱଜ ମାଧବ ରାଜନ,

କେତେ ବଡ଼ କଲୁ ତୁ ଆସ୍ପର୍ଦ୍ଧା !

ଚରମ ପତ୍ରକୁ ମୋର କଲୁ ତୁ ଅଗ୍ରାହ୍ୟ !

ଦେଲୁ ମୋର ଦୂତେ ଅପମାନ ?

ଏବେ ବି ସମୟ ଅଛି,

ଲକ୍ଷେ ସ୍ୱର୍ଣ୍ଣମୁଦ୍ରା ବଳନମୟେ,

ଏଡ଼ି ପାରୁ ତୁହି ତୋର ଆସନ୍ନ ବିପଦ ।

ଧର୍ମରାଜ—କାପୁରୁଷ, ନୀଚ, ହୀନମନା, ରେ ହର୍ଷବର୍ଦ୍ଧନ !

ଭାବୁଛୁ କି ତୋହର ଧମକେ

ଶଙ୍କିଯିବେ କଙ୍ଗୋଦ ନୃପତି ।
ସହିଯିବେ ତୋର ଅପମାନ ମୁଣ୍ଡପାତି ?
ଦେଉଛୁ ସମୟ,
ଅଚିରେ ପେଶାଅ ମୋର ସାଧୁ ସୌଦାଗରେ ।

ସୁମିତ୍ରା—ଆରେ ଅନ୍ଧ କଙ୍ଗୋଦ ନୃପତି !
କ୍ଷମତା ମୋହରେ ତୁହି ହୋଇଛୁ ଉନ୍ମତ୍ତ ।
ନ ମାନୁଛୁ ସୂର୍ଯ୍ୟ, ଚନ୍ଦ୍ର, ତାରା ।
ଯେଉଁ ହୀନ ଆଚରଣେ,
କଲୁ ହତ, ବୃଦ୍ଧ ନାନାଦେବେ,
ତାହାର ମୁଁ ପ୍ରତିଶୋଧ କରିଛି ବ୍ୟବସ୍ଥା ।
ଅଟ ଶୀଘ୍ର ହୁଅ ତୁ ପ୍ରସ୍ତୁତ ।
କଙ୍ଗୋଦର ଭାଗ୍ୟରବି ହେବ ଅସ୍ତମିତ ।

ଶୈଳେନ୍ଦ୍ର ମାଧବ—କିଏ ଏ ସୁଦର୍ଶନ ଯୁବା, ସେନାପତି ବେଶେ ?
ମୋ ପିତାଙ୍କୁ କଲା ଅପମାନ !
ଜାଣିନାହିଁ ମୋହର ବୀରତ୍ୱ, କିଏ ବୀର ତୁମେ ?

ସୁମିତ୍ରା – ଚହ୍ନି ନ ପାରିବ ତୁମେ ମୋର ରୂପ ଦେଖି ।
ଯୁଦ୍ଧରେ ପାଇବ ତୁମେ ମୋର ପରିଚୟ ।
ମୁଁ ଅଟଇ କୋଶଳ ନନ୍ଦନ ।
ନାମ ମୋର ଅଟେ ଅଶ୍ୱଦମ !

ହର୍ଷବର୍ଦ୍ଧନ – କିପାଇଁ କରୁ ବିଳମ୍ବ ଧୂର୍ତ୍ତ ଯଶୋବନ୍ତ ।
ପ୍ରକୃତରେ ଖ୍ୟାତ ତୁମ୍ଭ ପଡୁଅଛି ଜଣା ।
ହଁ, ଯଦି ମାଗୁ କ୍ଷମା,
ତୋ ଜୀବନ ଭିକ୍ଷା ତୋତେ ଦେଇ ମୁଁ ପାରଇ ।

ଧର୍ମଧ୍ୱଜ—ପିତା ମୋର ଯଶୋବନ୍ତ, କଙ୍ଗୋଦ ସମ୍ରାଟ ।
ମୁଁ ତାର ନନ୍ଦନ ଧର୍ମଧ୍ୱଜ ମୋର ନାମ ।
ତୋତେ ମୁଁ ମାଗିବି କ୍ଷମା ?
ମୁଁ ତ ତୋର ଯମ ।

ଶୈଳେନ୍ଦ୍ର ମାଧବ—ଦେଖି ତବ ରୂପ ଆନନ୍ଦ ମୋର ଅନ୍ତରେ,
ନ ହୁଅଇ ଇଚ୍ଛା ଯୁଝିବାକୁ ।

ସୁମିତ୍ରା—ଧିକ୍କୁ, କାପୁରୁଷ !
ନ କରଣ ବୃଥା ବାକ୍ୟ ବ୍ୟୟ,
ଅବଲମ୍ବି ଅସ୍ତ୍ର ଶସ୍ତ୍ର କର ହେ ଧାରଣ,
ଅତିଶୀଘ୍ର ପଠାଇବ ଯମନ ଆଳୟୁ ।

ଶୈଳେନ୍ଦ୍ର ମାଧବ—ହାଃ, ହାଃ. ହାଃ, ହାଃ, ହାଃ ।
ଯମନ ଆଳୟୁ ?
ମନେହୁଏ, ଶଙ୍କ ଦୋଷେ ପ୍ରକାଶିଲ ତାହା ।
ହୋଇଥିବ ଶ୍ୱଶୁର ଆଳୟୁ !
ହାଃ, ହାଃ, ହାଃ, ହାଃ, ହା

ହର୍ଷବର୍ଦ୍ଧନ—ଧର ଅସ୍ତ୍ର, ନକର ବିଳମ୍ବ ।
ସୁମିତ୍ରା—କର ଯୁଦ୍ଧ ଶୀଘ୍ରରେ ପାମର ।
ଧର୍ମରାଜ—ମୃତ୍ୟୁ ତୋର ହୋଇଲା ନିକଟ ।
ଶୈଳେନ୍ଦ୍ର ମାଧବ—ଅଚିରେ ତୋ ମନୋବାଞ୍ଛା କରିବି ପୂରଣ ।

( ଯୁଦ୍ଧବାଜା ବାଜି ଉଠିବା ସଙ୍ଗେ ସଙ୍ଗେ ସମସ୍ତେ ଅସ୍ତ୍ର ଉତ୍ତୋଳନ କରି ଜଣେ ପରେ ଜଣେ ମଧ୍ୟସ୍ଥିତ ପଡ଼ିଆକୁ ଡେଇଁ ପଡ଼ିଲେ । ଦୁଇ ଜଣିଆ ଯୁଦ୍ଧ ଚାଲିଲା । ଏକ ସମୟରେ ସମସ୍ତ ରଙ୍ଗଭୂମି ପ୍ରାନ୍ତର ଧାଡ଼ିଭାବେ ଯୁଦ୍ଧରତ ସୈନ୍ୟମାନଙ୍କ ଦୃଶ୍ୟ । ଏ ମଧ୍ୟରେ ଦୁଇ ଜଣ ବିଦୂଷକ ଓ ୧ମ ଚର, ୨ୟ ମଞ୍ଚରେ ପ୍ରବେଶ କଲେ ।

## ଦୃଶ୍ୟାନୁକ୍ରମ—ପନ୍ଦର

ବିଦୂଷକ ଦ୍ୱୟ—ହଁ ଚାଲୁ, ଚାଲୁ, ଚାଲୁ
ଲାଗୁ, ଲାଗୁ, ଲାଗୁ,
ଜାଣି ନାହାନ୍ତି ଏ ତ ଆମ ପ୍ରଭାବ—
ତେଣୁ ତାଙ୍କର ଏଇ ଅନାସ୍ଥାଭାବ—

ଦେଖିବା ଭଲ ଜଏ କିଚ୍ଛୁତ ଏଇନେ—
ହଁ ମାର, ମାର ନେ ତଡ଼ନେ—
ଯା ଲଗିଯା, ଯା ଲଗିଯା

(ଉଭୟ ମୂକ ଅଭିନୟରେ ଯୁଦ୍ଧ କରି – କ୍ଲାନ୍ତ ହୋଇ ମଞ୍ଚରୁ ଚାଲିକି ପଡ଼ି ଗଲେ)

ସମସ୍ତ ଯୁଦ୍ଧ ଗୋଟିଏ ନାଚନରେ ପରିଣତ ହୋଇ ଛଟୋଟିଯାକ ମଞ୍ଚ ପରିକ୍ରମା କରିବା ପରେ ନେପଥ୍ୟକୁ ପ୍ରସ୍ଥାନ କଲେ ।

## ଦୃଶ୍ୟାନୁକ୍ରମ—ଷୋହଳ

(ଧର୍ମରାଜ ଓ ହର୍ଷବର୍ଦ୍ଧନ ଯୁଦ୍ଧ କରି କରି ୨ୟ ଓ ୩ୟ ମଞ୍ଚ ମଧ୍ୟରେ ଥିବା ପଡ଼ିଆରେ ପହଞ୍ଚିଲେ – କେତେବେଳେ ୨ୟ ମଞ୍ଚ ବା କେତେବେଳେ ୩ୟ ମଞ୍ଚ ଚଢ଼ି, ପୁଣି ପଡ଼ିଆ ମଝିକୁ ଆସିଲେ—ସେମାନଙ୍କ ସୈନ୍ୟ ଦୂରରେ ଯୁଦ୍ଧ କରୁଥାନ୍ତି— ତାପରେ ଗୋଟିଏ ମୁହୂର୍ତ୍ତରେ ଧର୍ମରାଜ ୨ୟ ମଞ୍ଚକୁ ଓ ହର୍ଷବର୍ଦ୍ଧନ ୩ୟ ମଞ୍ଚକୁ ଦୌଡ଼ି ଚାଲିଗଲେ)

ଧର୍ମରାଜ—ଆରେ ଭଣ୍ଡ ହରଷବର୍ଦ୍ଧନ
ଅଚିରେ ଦେଉଛୁ ତୋର ହର୍ଷ ଛେଦ କରି ।

ହର୍ଷବର୍ଦ୍ଧନ—ତୁ କାହୁଁ ଜାଣିବୁ ରଣ କୌଶଳ ଧରମା
ମନେ ନାହିଁ ଇତିହାସ କଥା
ଏଇ ତୋର କଳିଙ୍ଗ ବାହୁବଳି
ଧୂଳିସାତ କରିଥିଲା ସମ୍ରାଟ ଅଶୋକ
ରକ୍ତ ନଦୀ ବୁହାଇଲା ଏଥି
ମୁଁ ଅଟେ ତା ବଂଶଧର
ଅଚିରେ ତୋ ଶିରଚ୍ଛେଦ କରିବି ଧରମା

ଧର୍ମରାଜ—ଭଲକଥା ଦେଲୁ ମନେକରି
ଚଣ୍ଡାଶୋକ ଆସିଥିଲା ରଣ ଜୟ କରି
ରକ୍ତ ନଦୀ ବୁହାଇଲା ସିନା
କଲୁ ହେଲା କି ତା କଳିଙ୍ଗ ବିଜୟ

କଳିଙ୍ଗର ଖାର ମଲେ ସତ
କିନ୍ତୁ ପରାଜୟୁ ହେଲା ଅଶୋକର
ଆଜ ଏଇ କଳିଙ୍ଗ ବଣିକେ
ପ୍ରଚ୍ଚରିଲେ ଧର୍ମଗାଥା ସୁଦୂର ବିଦେଶେ ।

ହର୍ଷବର୍ଦ୍ଧନ—(ହସି) କାହିଁକି ବଢ଼ାଇ ବେଶୀ କରୁଛୁ ଧରମ
ମୃତ୍ୟୁ ତୋର ନାହିଁ ବେଶୀ ଡେରି ।

(ଗୀତ)

ଆରେ ଆରେ ଦୁଷ୍ଟ କଙ୍ଗୋଦ ନୃପତି ଘୁଡ଼ ଫଳା ଘୁଡ଼ ଫଳାରେ
କରି ଖଣ୍ଡ ଖଣ୍ଡ କାଟିବି ତୋ ମୁଣ୍ଡ, ବୋଳିବି ତୋ ମୁଖେ କଳାରେ ।୧।
ଚୋର, ଖଣ୍ଟ, ଦସ୍ୟୁ, ତସ୍କରମାନଙ୍କ କରିଛ ଗୋଟାଏ ମେଳାରେ,
ସାଧୁ ଲୋକ କେବେ କରନ୍ତି ବେଉସା!, ନ କାଟି ଗରିଖ ଗଳାରେ ।୨।
ଚିରକାଳ ତୁମେ ଅଳସୁଆ ବୋଲି ପିନ୍ଧିଅଛ ପରି ଚୂଳାରେ,
ସୌଦାଗର ସାଜି, ଲୁଟୁଛ ବିଦେଶ ବୁଡ଼ିବ ତୁମର ଭେଳାରେ ।୩।
ଏ ତ ରଣଭୂମି, ନୁହେଁ ରଙ୍ଗଭୂମି, ଦେଖାଇବୁ ତୋର କଳାରେ,
ଯଦି ବଞ୍ଚିବାକୁ ଇଚ୍ଛାକରୁ କ୍ଷମା ମାଗ ତୁ ନ କରି ହେଳାରେ ।୪।

ହର୍ଷବର୍ଦ୍ଧନ—ରେ ମୂର୍ଖ, ମୃତ୍ୟୁ ତୋର ବେଶୀ ଡେରି ନୁହେଁ

ଧର୍ମରାଜ—ହାଃ, ହାଃ, ହାଃ, ହାଃ, ହା
ଭାବିଛୁ କି ମୃତ୍ୟୁ ଡର ତୋଠୁ ମୋର ବେଶୀ

(ଗୀତ)

ଭାବିଛୁ କି ମୃତ୍ୟୁ ଡର, ତୋଠୁ ମୋର ବେଶୀ
ଈର୍ଷାରେ ଜଳୁଛ ସିନା ହୋଇ ପ୍ରତିବେଶୀ
ହର୍ଷବର୍ଦ୍ଧନ ତୁରେ ! ପଶୁ ବଳେ ନ ଜିଣିବୁ ମନରେ ।୧।
କଳିଙ୍ଗ, ଉତ୍କଳ ଅଟେ ପୂଣ୍ୟ ଦେବଭୂମି
ଧର୍ମପ୍ରାଣ ନାଗରିକ ସ୍ୱତଃ ଏଥୁ ଜନ୍ମି
ବୃଥା ରକ୍ତପାତରେ ! ନ ଥାଏ ବିଶ୍ୱାସ ଏହା ସତ୍ୟରେ ।୨।
ହେଲେ ଆବଶ୍ୟକ କିନ୍ତୁ ତା'ଠାରୁ କିଷ୍ଟୁର
ନ ଥିବ ପ୍ରାଣୀ ଜଗତେ ମନରେ ବିଚ୍ଚର
ଇତିହାସ କଥାରେ, ପାଶୋରିଲୁ ଖାରବେଳ ଗାଥାରେ ।୩।

ଯବନ ବା ଡଚମର ବାହୁଡ଼େ ସ୍ୱଦେଶେ
ଭାରଦର୍ପେ କର ଦଗ୍‌ବିଜୟ ଦେଶେ ଦେଶେ
ଭାରତ ଭୂଖଣ୍ଡ ରେ, ଖାରବେଳ ଭାରତ ଅଖଣ୍ଡରେ ।୮।

ନ ଥିଲା ରକ୍ତ ପିପାସୁ ସେହି ଖାରବେଳ
ସୁଦୂର ଦେଶ ବିଦେଶେ ତାର ସୌଦାଗରେ
ସତ୍ ବାଣିଜ୍ୟ କର୍ମରେ, ବିତରିଲେ ମାନବିକ ଧର୍ମରେ ।୫।

ମୁଁ ଅଟେ ତାର ଦାୟାଦ, ହୋଇପାରେ ଶାନ୍ତ
କିନ୍ତୁ ଜାଣି ରଖିଥାଅ, ନୁହେଁ ମୁହିଁ ସୁପ୍ତ
ସଦା ହିଁ ଜାଗ୍ରତ ରେ, ରଣେ ନଷ୍ଟେ ହେବୁ ଭୁ ପରାସ୍ତ ରେ ।୬।

ବୃଥା କାରଣରେ ଆସି କରୁଛୁ ବଢ଼ାଇ
ଏ ଜାତିର ସହିଷ୍ଣୁତା ଗୁଣେ ଦେଇ ଦାହା
ଅଲଜୁକ ତୁମେ ରେ, ଘୁଞ୍ଚ ପଳାଅ କହୁଛୁ ଆମେ ରେ ।୭।

ହର୍ଷବର୍ଦ୍ଧନ—ବୃଥା କାଳକ୍ଷେପ କାହିଁ କରୁଛୁ ଧରମା
ଦେଖୁଛୁ ଭୁ ଅଛୁ ବାକ୍ୟବୀର, ନୋହୁ ଭୁ କରମେ
ମାଗ କ୍ଷମା – ଆବଶ୍ୟକ ତୋର

ଧର୍ମରାଜ—ହାଃ, ହାଃ, ହାଃ
କ୍ଷମା, କଙ୍ଗୋଦ ସନ୍ତାନ କେବେ ମାଗେ ନାହିଁ କ୍ଷମା
କିନ୍ତୁ ଏଇ କ୍ଷମାର ସାଗରୁ
ଯେତେ ଇଚ୍ଛା ତୁହି ମାଗି ନେଇପାରୁ
(ପୁଣି ମଞ୍ଚ ତଳକୁ ଓହ୍ଲେଇ ତେଇଁ ଯୁଦ୍ଧ କରିବା)

(ହର୍ଷବର୍ଦ୍ଧନ ଓ ଧର୍ମରାଜଙ୍କ ଯୁଦ୍ଧବେଳେ ଅନ୍ୟ ସୈନ୍ୟମାନେ ନେପଥ୍ୟରେ ଯୁଦ୍ଧ କରି କରି ଏପାଖୁ ସେପାଖ ଯାଉଥିଲେ । ବିଦୂଷକଦ୍ୱୟ ୨ୟ ମଞ୍ଚରୁ ଖସି ପଡ଼ିଲେ ଓ ପୁଣି ଅତର୍କି ଦୌଡ଼ ମଞ୍ଚ ଉପରେ ଉଠିଲେ – ଧର୍ମରାଜ ଓ ହର୍ଷବର୍ଦ୍ଧନ ୩ୟ ମଞ୍ଚରେ ଭୀଷଣ ଯୁଦ୍ଧ ପରେ ହର୍ଷବର୍ଦ୍ଧନ ୩ୟ ମଞ୍ଚର ବାହାର ପାଖକୁ ଡେଇଁ ପଳାୟନ କଲା । ଏହା ଦେଖି ତାର ସୈନ୍ୟମାନେ ମଧ୍ୟ ସେହି ବାଗେ ପଳାୟନ କଲେ, ଧର୍ମରାଜ ୩ୟ ମଞ୍ଚରେ ଏକାକୀ)
(ଧର୍ମରାଜଙ୍କର ଜୟଧ୍ୱନି)

ବିଦୂଷକ—ପଳାଇଲା ରେ, ପଳାଇଲା ରେ

୧ମ ଚର—କେତେ ଫୁଟାଣି ମାରୁଥିଲା ରେ

ଧର୍ମରାଜ—ସମ୍ରାଟ ହର୍ଷବର୍ଦ୍ଧନ – ହାଃ, ହାଃ, ହାଃ, ହା । ଶେଷରେ ପଳାୟନ କଲ । ବର୍ତ୍ତମାନ ଯାଇ ସୌଦାଗରମାନଙ୍କୁ ମୁକ୍ତ କରିବ । (ପ୍ରସ୍ଥାନ ଓ ୩ୟ ମଞ୍ଚ ଅନ୍ଧକାର)

## ଦୃଶ୍ୟାନୁକ୍ରମ—ଶତର

(ବିଦୂଷକ ଓ ୧ମ ଚର ଉଭୟ ଆଡ଼କୁ ୨ୟ ମଞ୍ଚରୁ ବଲ ବଲ କରି ଚାହିଁ ଦେଖୁଥାଆନ୍ତି, ଏହି ସମୟରେ ସୁମିତ୍ରା ଓ ଶୈଳେନ୍ଦ୍ର-ମାଧବ ଯୁଦ୍ଧ କରି କରି ପ୍ରଥମ ମଞ୍ଚରେ ପ୍ରବେଶ କଲେ, ତାଙ୍କ ସୈନ୍ୟମାନେ ପଛଆରେ ଯୁଦ୍ଧ କରୁଥାଆନ୍ତି । କିଛି ସମୟ ପରେ ସୁମିତ୍ରା ହାତରୁ ଖଣ୍ଡା ଖସିପଡ଼ିଲା ଓ ଶୈଳେନ୍ଦ୍ରମାଧବ ତା' ହାତ ଧରି ପକାଇଲେ)

ଶୈଳେନ୍ଦ୍ରମାଧବ—ବର୍ତ୍ତମାନ ମରିବାକୁ ହୁଅ ତୁ ପ୍ରସ୍ତୁତ ।
ସୈନ୍ୟଗଣ, ବନ୍ଧ କର ଶତ୍ରୁ ଗୋଟି ଗୋଟି ।

(ପଛଆରେ କଙ୍ଗୋଦ ସୈନ୍ୟମାନେ କୋଶଳ ସୈନ୍ୟମାନଙ୍କୁ ବାନ୍ଧ କରି ପକାଇଲେ)

ଜୟଧ୍ୱନି—ଜୟ କଙ୍ଗୋଦ କୁମାର ଶୈଳେନ୍ଦ୍ରମାଧବଙ୍କର ଜୟ ।

(ପଦ୍ମା ଓ ମଞ୍ଜୁଷା ୧ମ ମଞ୍ଚକୁ ଚଢ଼ିଥିଲେ, ସୁମିତ୍ରା ନିଜକୁ ମୁକ୍ତ କରିବା ପାଇଁ ଟାଣି ହେବାରେ ସାଞ୍ଜୁ ଶୈଳେନ୍ଦ୍ରମାଧବଙ୍କ ହାତରେ ରହିଗଲା, ସୁମିତ୍ରା ଅପ୍ରତିଭ ହେଲେ । ସଖୀଦ୍ୱୟ ୧ମ ମଞ୍ଚ ତଳକୁ ଡେଇଁପଡ଼ି ଅପେକ୍ଷା କଲେ)

ଶୈଳେନ୍ଦ୍ରମାଧବ – (ନାରୀରୂପ ଦେଖି) ଏ କଅଣ ସ୍ୱପ୍ନ ନା ସତ୍ୟ ?
ଅଶ୍ୱାରୋହୀ, ତୁମେ କି ରମଣୀ ?
ଧନ୍ୟ ବୀର, ଅନ୍ୟ ତୁମର ସାହସ
ଶୈଳେନ୍ଦ୍ରମାଧବ ସଙ୍ଗେ ଦେଲ ରଣେ ତ୍ରାସ
କୁହ କିଏ ତୁମେ ?
ଛଦ୍ମବେଶେ କିମ୍ପା ଆସି କରୁଥିଲ ରଣ ?

ସୁମିତ୍ରା — ଯୁବରାଜ, ତେବେ ଶୁଣ ମୋର ପରିଚୟ
କୋଶଳ ନନ୍ଦିନୀ ମୁହିଁ, ଈଶ୍ବର ଦୁହିତା
ମୋର ପିତାମାତାଙ୍କର ଏକମାତ୍ର ସୁତା
ସୁମିତ୍ରା ମୋ ନାମ (କ୍ରନ୍ଦନ)
ଆସିଥିଲି ପିତାଦେଶେ ଯୁଝିବାର ପାଇଁ
କଳିଙ୍ଗେ ବିଜୟୁ ଆଶା ହୃଦମଧ୍ୟେ ବାନ୍ଧି
ଆଜ ମୁହିଁ ପରାଜିତା, ଆଜ ମୁଁ ବନ୍ଦିନୀ
କି ଲାଭ ଅଛି ଆଉ ଏ ଜୀବନ ଧାରଣେ
ବରଂ ମୃତ୍ୟୁ ଶ୍ରେୟସ୍କର
ଧିକ, ଧିକ ଏ ଜୀବନ
କଳିଙ୍ଗ କୁମାର, ଶୀଘ୍ର କର ଶିରଚ୍ଛେଦ ମୋର
(ଶିର ନୁଆଇଁବା ଓ କାନ୍ଦିବା) (ମଞ୍ଚ ମଞ୍ଚରେ ବିଦୁଷକଦ୍ଵୟ )

ଶୈଳେନ୍ଦ୍ରମାଧବ — (ଧରିପକାଇ) କ୍ଷାନ୍ତ ହୁଅ କୋଶଳ ନନ୍ଦିନୀ
କୁହନା ସେ କଥା

(ଗୀତ)

ସୁନୟନା, ସେ କଥା ଆଉ କହନା,
ସବୁ କଥା ମନୁ ଭୁଲି ବାରେ ହସନା ।
ଶିରୀଷ କୋମଳ ସୁକୁମାର ତୋ ତନୁ,
ରଣଶ୍ରମେ ସ୍ଵେଦ ବିନ୍ଦୁ ବହେ ବଦନୁ ।
କିପାଇଁ ହାରିବୁ ଜୀବ, ବର ବରନା ।୧।
ଦେଖିଲି କ୍ଷଣେ ତୋତେରେ କ୍ଷୀଣବସନା,
ମନେ ମୋ ଜାଗିଛି କେତେ ପ୍ରୀତି ବାସନା,
କହ ମୋତେ ବରିବୁ ନ କର ଛଳନା ।୨।
ସୂର୍ଯ୍ୟତାପେ ଲାଜେ କମଳିନୀ ଯେପରି,
ଦୋହଲେ ମୃଦୁ ସମୀରେ ହସିରେ ଗୋରି,
ସେ କୋମଳ ଅଙ୍ଗକୁ ତୁ ଆଉ ଦହନା ।୩।
ମୁଁ ହୋଇଛି ବନ୍ଦି ନୁହେଁ ତୁ ମୋ ବନ୍ଦିନୀ,
କର ସିଂହାର ରେ କୋଶଳ ନନ୍ଦିନୀ,
କିପାଇଁ ନିନ୍ଦୁଛୁ ଆପେ ଦେଇ ଭର୍ତ୍ସନା ।୪।

ଗୃହିଁ ଥରେ ମୋ ଆଖିରେ ଆଖି ମିଳାଇ,
ସବୁ ଦୁଃଖ ଭୋର କେଉଁଣେ ଯିବ ଉଭାଇ,
ବିଧାତାର ଲୀଳା ଦେଖ, ମିଛେ ମରନା ।୬।

(ଗଦ୍ୟ) – ହସନା, ହସ, ହସ ଥରେ

ସୁମିତ୍ରା –(ଲାଜରେ ହସି ଦୂରେଇ ଯିବା)

(ଗୀତ)

ପ୍ରିୟତମ, ମୋ ଜନମ, ହେଲାଟି ଧନ୍ୟ ।
ମୋର ମନ ଆଶା, ତୁମେ ଦେଲ ଭାଷା,
ସଫଳ ହୋଇଲା ମୋର ସପନ ।୧।

ଦେଖିଲା କ୍ଷଣୁ ତୁମକୁ ଭଲ ପାଇଲି,
ରଣ କ କରିବ ମୁଁ ତ ଲାଜେ ସହିଲି,
ତୁମ କ୍ଷମା ଲାଗି, ବଞ୍ଚିଲ ମୁଁ ଆଜି
ନୋହିଲେ ସରି ମୋ ଥାଆନ୍ତା ଦିନ ।୨।

କହି ଆସିଥିଲ ପିତା ତବର ପାଶେ,
ରଣେ ଜୟ କରି ଫେରିବ ମୁଁ ହରଷେ,
ରଣ ମୋ ନୋହିଲା, ପଣ ତ ରହିଲା
ଜଣିଲ ତ ଆଜ କଙ୍ଗୋଦ ପ୍ରାଣ ।୩।

ପାଇ ତୁମ ପରି ବୀର ସୁଶ୍ରୀ ଜାମାତା,
ଦୂର ହେବ ପିତାଙ୍କର ମନ ଦୁଶ୍ଚିନ୍ତା,
ସମର୍ପି କୋଶଳ, ରାଜ୍ୟ ତୁମ କର
ପୂଜିବେ ଦେଇଣ ଯୋଗ୍ୟ ଆସନ ।୪।

(ଗଦ୍ୟ)—ଆର୍ଯ୍ୟ ପୁତ୍ର !
ଆସ ଯିବା ପିତାଙ୍କ ନିକଟେ
ଆନନ୍ଦିତ ହେବେ ପିତା ପାଇ ତାଙ୍କ
ସୁଯୋଗ୍ୟ ଜାମାତା, ଆସ । (ହାତ ଧରି ଉଭୟ ପ୍ରସ୍ଥାନ)

## ଦୃଶ୍ୟାନୁକ୍ରମ—ଅଠର

(୨ୟ ମଞ୍ଚରେ ୧ମ ଚର ଓ ବଦୁଷକ ଜଳଜଳ କରି ଗୁହାଁ ଅବାକ୍, ଚନ୍ଦ୍ରା ଓ ମଞ୍ଜୁଷା ୧ମ ମଞ୍ଚକୁ ପ୍ରବେଶ କଲେ, ଏ ମଧ୍ୟରେ ଦୁଇଜଣ ସୈନ୍ୟ ଆସି ଠିଆହେଲେ ମଞ୍ଚତଳେ)

ଚନ୍ଦ୍ରା—ଅଗୋ ମଞ୍ଜୁଷା,
ଆଉ ଦେହରେ ସାଞ୍ଜୁ ରଖି ଲଭ କଅଣ ?
ସବୁ କଥା ତ ଜଣା ପଡିଗଲାଣି

ମଞ୍ଜୁଷା—ହଁ ଗୋ ହଁ, ଆଉ ଏ ଛଦ୍ମବେଶ କାହିଁକି ?
ଖୋଲିଦିଅ ଏ ବୀର ପୋଷାକ
କାଢିଦିଅ ଶିରସ୍ତ୍ରାଣ, ଫିଙ୍ଗିଦିଅ ଅସ୍ତ୍ର
ଗଦା, ଭଲ, ବର୍ଚ୍ଛା ଧନୁଶର
ଚଞ୍ଚଳରେ ଆଜ କେମାମଣି ନଯ ଆଦ୍ଧତ ।

(ସୈନ୍ୟ ପୋଷାକ କାଢିଲାବେଳେ ୨ୟ ମଞ୍ଚରେ ବଦୁଷକ ଓ ୧ମ ଚର ବଲ ବଲ କରି ଗୁହାଁ ଥାଆନ୍ତି—୧ମ ମଞ୍ଚ ତଳେ ଥିବା ସୈନ୍ୟ ଅପେକ୍ଷା କରି ଥାଆନ୍ତି, ସଖିମାନେ ପୋଷାକ କାଢି ଦିବାକୁ ଉଦ୍ୟତ କଲାବେଳେ ସୈନ୍ୟ ଦି'ଜଣ ମଞ୍ଚ ଉପରକୁ ଉଠି ସେମାନଙ୍କ ହାତ ଟାଣି ନେଇଗଲେ । ୨ୟ ମଞ୍ଚରେ ବଦୁଷକ ଓ ୧ମ ଚର ଉଭୟେ ଉଭୟଙ୍କୁ ଗୁହାଁ ଠଉଠର ହେଲେ । ଏ ମଧ୍ୟରେ ଆଉ ଦି'ଜଣ ନଶୁଆ ସୈନ୍ୟ ଆସି ୧ମ ମଞ୍ଚରେ ପ୍ରବେଶ କରି ଠିଆହୋଇ ରହିଲେ ।)

ବଦୁଷକଦ୍ୱୟ—ଆରେ ରେ ଏ କଣ ପ୍ରମିଳା ରାଜ୍ୟ କରେ ?
ବାହାରକୁ ଅଣ୍ଡିରା, ଭିତରେ ପୁରା ମାଇକିନିଆ
ଧେତ୍ତେରି, ନେଇ ଗୁଲିଗଲେ ତ
ଦେଖ ବେ ଆଉ କିଏ କୋଉଠି ଥିବ ।

(ଖୋଜି ଖୋଜି ୨ୟ ମଞ୍ଚରୁ ୧ମ ମଞ୍ଚକୁ ଯାଇ ଖୋଜ ଠିଆ ହୋଇଥିବା ସୈନ୍ୟ ଦୁଇ ଜଣଙ୍କୁ ପଛରୁ ଯାଇ ଗୋଡ଼ ଜାବୁଡ ଧରିବା ।)

ଆରେ ଏଇଠି ଅଛୁ ଆମେ ଖୋଜ ହଉଚେ
ହ'ଜଣକୁ ହ'ଟା, ଠିକ୍ ଭାଗ ପଡ଼ୁଛି
ଏଁ ନଣ କରୁଛୁ
ଏଁ ଦାଡ଼ି କରୁଛୁ
(ଦାଢି, ନଣ, ଲୁଗା ଉଡ଼ିବାବେଳେ ସୈନ୍ୟ ଦୁହେଁ ଏମାନଙ୍କୁ ବୁଲେଇ ପିଟିବା । ଏମାନେ ମାଡ଼ ଖାଇ ଖାଇ ପ୍ରସ୍ଥାନ । ୧ମ ଚର ବହୁ ଦୂରକୁ ପଳାୟନ—ଅନ୍ଧକାର)

## ଦୃଶ୍ୟାନୁକ୍ରମ—ଉଣେଇଶ

(ତୃତୀୟ ମଞ୍ଚ ଆଲୋକିତ ହେବା, ସଙ୍ଗୀତ ସହ ଧର୍ମରାଜ ଓ ସୌଦାଗରଗଣ ଓ ୨ୟ ଚର ମଞ୍ଚରେ ପହଞ୍ଚିବା)

ଧର୍ମରାଜ—ସୌଦାଗରଗଣ,
ପରାଜିତ ଆଜ ଖଣ୍ଡ ସେ ଦୁର୍ଷବର୍ଦ୍ଧନ
ଆସ ଶୀଘ୍ର ଯିବା ରାଜ୍ୟ ଫେରି
ଯାଅ ଦୂତ ଶୀଘ୍ର ଦେଶେ ଯାଇ
ଜଣାଅ ପିତାଙ୍କଠାରେ ସମସ୍ତ ସମ୍ବାଦ
କଙ୍ଗୋଦର ବୈଜୟନ୍ତୀ ଉଡ଼ାଇ ଉଲ୍ଲାସେ
ଫେରୁଛୁ ନିକଟେ ରାଜ୍ୟ ବିଜୟ ହରଷେ
ଦୀପାବଳି ଅମାବାସ୍ୟା ରାତ୍ର ପ୍ରଭାତ ପୂର୍ବରୁ
ହଅ ସମ୍ବର୍ଦ୍ଧନା ଆମ୍ଭ ଏଠାରେ ସୌଦାଗରେ ।
ସୌଦାଗରମାନେ—ଜୟ ଯୁବରାଜ ଧର୍ମରାଜ ମାନଙ୍କ ଜୟ
(ସମସ୍ତଙ୍କର ପ୍ରସ୍ଥାନ—ସଙ୍ଗୀତ ସହ—୩ୟ ମଞ୍ଚ ଅନ୍ଧକାର)

## ଦୃଶ୍ୟାନୁକ୍ରମ—କୋଡ଼ିଏ

(ସଙ୍ଗୀତ ପରିବର୍ତ୍ତନ ସଙ୍ଗେ ସଙ୍ଗେ ୧ମ ମଞ୍ଚ ଆଲୋକିତ । କୋଶଳ ରାଜା ଢବର, ସୁମିତ୍ରା ଓ ଶୈଳେନ୍ଦ୍ର ମାଧବଙ୍କ ପ୍ରବେଶ)

ଢବର—କଙ୍ଗୋଦର କ୍ଷାତ୍ର ଚୂଡ଼ାମଣି
ମୁଗ୍ଧ ମୁଁ ହୋଇଛି ତୁମ ରଣ କଉଶଳେ

ଯୋଗ୍ୟ ପିତାର ଯେ ତୁମେ ସୁଯୋଗ୍ୟ ସନ୍ତାନ
ଯୁଦ୍ଧ କ୍ଷେତ୍ରେ ମିଳିଅଛି ତାହାର ପ୍ରମାଣ
ଆଉ ମୋର ନାହିଁ ରାଜ୍ୟଲିପ୍ସା
ମୋର ଏକମାତ୍ର କନ୍ୟା ସୁମିତ୍ରାକୁ ସମର୍ପଣ କରି ତୁମ ହସ୍ତେ
ଚଳିଯିବି ମୁହିଁ ବାନପ୍ରସ୍ଥେ (ଦୁଇ ହାତ ମିଳାଇ ଦେବା)
ଆଜଠାରୁ ସୁମିତ୍ରା ଯେ ହୋଇଲା ତୁମର
ଆଉ ଏ କୋଶଳ ରାଜ୍ୟ ସମର୍ପିତ ହେଲା ତୁମ କର
କୋଶଳର ନାଗରିକ ସର୍ବେ
ଦେଖାଇବେ ତୁମ ପ୍ରତି ଯଥା ଆନୁଗତ୍ୟ

ଶୈଳେନ୍ଦ୍ର ମାଧବ—ଯଥା ଆଜ୍ଞା ପିତା !

ତିବର—"କଙ୍ଗୋଦ ରାଜକୁମାର ତଥା କୋଶଳାଧିପତି ଶୈଳେନ୍ଦ୍ର ମାଧବଙ୍କର ଜୟ"

(ଶୈଳେନ୍ଦ୍ର ମାଧବ ଓ ସୁମିତ୍ରାଙ୍କର ପ୍ରସ୍ଥାନ)

ତିବର—(ଏକାକୀ) ପରାଜୟର ଗ୍ଲାନି, ପୁଣି ଏ ବୃଦ୍ଧ ବୟସେ
କଙ୍ଗୋଦ ରାଜାର ସୁତ ଶୈଳେନ୍ଦ୍ର ମାଧବ ଆଜି ଉଡ଼ଅଛି
ଧରି, ସ୍ୱ-ଦୁର୍ବଳତା ଗୁଣେ । ତାକୁ କରି ହାତ, ମେଣ୍ଟାଇବି
ଓଡ଼ିମାନ ମୋର । ପିତାପୁତ୍ର, ଭାଇ ଭାଇ ମଧ୍ୟେ, ସୃଜାଇ ବିବାଦ
କଙ୍ଗୋଦ କରିବି ମୋର କରତଳ ଗତ
ସେ ଦିନ ଆଉ ବେଶୀ ଡେରି ନୁହେଁ
ହାଃ, ହାଃ, ହାଃ, ହାଃ, ହା (ତିବର ପ୍ରସ୍ଥାନ) (ସଙ୍ଗୀତ)

## ଦୃଶ୍ୟାନୁକ୍ରମ—ଏକୋଇଶି

(ଛନୋଟିଯାକ ମଞ୍ଚ ତଥା ସମସ୍ତ ରଙ୍ଗଭୂମି ପ୍ରାନ୍ତର ଅନ୍ଧକାର ହେଲା ଓ ଦୀପାବଳିର ଦୃଶ୍ୟ ଦେଖାଗଲା । ସମବେତ କଣ୍ଠରେ ଦୀପାବଳି ଗୀତ ଆରମ୍ଭ ହେଲା ଓ ଛନୋଟିଯାକ ମଞ୍ଚରେ ନାଚ, ଗୀତ ଆରମ୍ଭ ହେଲା ।

ବରଷକ ପରେ ଆସିଛି ତ ଆଜି, ଅମାବାସୀ ଦୀପାବଳି,
ନାଗରରେ, ଅମାବାସୀ ଦୀପାବଳି
ଆନନ୍ଦର ଢେଉ ଆଜି ଘରେ ଘରେ, ନାଗରରେ,
ଦୀପମାଳା ଉଠେ ଜଳି ନାଗରରେ ।୧।

ଯାଇଛି ଶରତ ଆସିଛି ହେମନ୍ତ, ଧରା ସୁଶୋଭିତ ବେଶେ,
ନାଗଖାଇରେ ଧରା ସୁଶୋଭିତ ବେଶେ
ନୀଳ ଆକାଶରେ ଧୂସର ବାଦଲ, ନାଗଖାଇରେ,
ଧାଏ ଚାଲି କେଉଁ ଦେଶେ ନାଗଖାଇରେ ।୨।
ଘରେ ଘରେ ଆଜ ସଜାଇ ଦେଇଛି ହେଉ ଧନୀ ବା ନିର୍ଧନୀ
ନାଗରରେ ହେଉ ଧନୀ ବା ନିର୍ଧନୀ
କେଉଁ ଅତିଥିକୁ କରୁଛି ସ୍ୱାଗତ ନାଗରରେ,
କାହା ଆଗମନ ଶୁଣି ନାଗରରେ ।୩।
ହସ ଗୀତ ଆଜ ପୂରିଛି ସଦନେ ମେଦିନୀ
କମ୍ପୁଛି ବାଣେ ନାଗଖାଇରେ
କୋଠୀ ପ୍ରଦୀପରେ ଝଲସୁଛି ଧରା ନାଗଖାଇରେ
ଅନ୍ଧାର ଯାଏ ତ କେଣେ ।୪।
ସାରା ବରଷର କଷଣ ହରିଛି, ଆସିଛି ସହାର ଦିନ
ମାତି ମଉଛବେ ଆନନ୍ଦେ ସରବେ
ନାଗରରେ ଦୁଃଖ ନାହିଁ କାର ମନ ।୫।
ବାର୍ଷିକାବସରେ ଆମ ସୌଦାଗର ଫେରୁଛି
ସ୍ୱଦେଶୁ ଘର ନାଗଖାଇରେ
ବନ୍ଦାଇ ନିଅ ଗୋ ଝିଅ ବୋହୂମାନେ
ନାଗଖାଇରେ ହୁଳହୁଳି ନାଦକର ।୬।
ବରଷ ଯାକର କରି ପରିଶ୍ରମ ଆଣୁଛି
ଦରବ ଧନ ନାଗରରେ
ବଢାଇଛି ଯଶ, ଜାତି ପତାକାର ନାଗରରେ
ରଖି ମାଟି ସନମାନ ।୭।
ସଙ୍ଗୋଳିବ ଆଜ ପୂରୁବ ପୁରୁଷ ଟେକିଣ
ଆଲୋକ ଶୂନ୍ୟେ ନାଗଖାଇରେ
ସନ୍ତୋଷ ହୋଇବେ ମହାସ୍ୱର୍ଗବାସୀ
ନାଗଖାଇରେ ଆଶୀର୍ବାଦ ଦେବେ ଜନେ ।୮।
ଯେତେ ଅମାମୟ ହେଉ ଏ ଜୀବନ କରିବା
ଆମ କରମ ନାଗରରେ
ଅପସରି ଦୁଃଖ, ଆସିବଟି ସୁଖ ନାଗରରେ
ଏତ ସଂସାର ଧରମ ।୯।

## ଦୃଶ୍ୟାନୁକ୍ରମ—ବାଇଶି

(ଦୀପାବଳି ଗୀତର ସଙ୍ଗୀତ ଶେଷ ପରେ ମଞ୍ଚ ଆଲୋକିତ ହେଲା । ରାଜା ଯଶୋଧ୍ୱଜ, ମନ୍ତ୍ରୀ. ଧର୍ମରାଜ, ଶୈଳେନ୍ଦ୍ର ମାଧବ, ସୌଦାଗରଗଣ ପ୍ରବେଶ କଲେ ସଙ୍ଗୀତ ସହ ।

(ଜୟଧ୍ୱନି)—ଜୟ କଳିଙ୍ଗାଧିପତି ଯଶୋଧ୍ୱଜ ମାଧବରାଜଙ୍କର ଜୟ
ଜୟ ଯୁବରାଜ ଧର୍ମରାଜ ମାନଧ୍ୱଜଙ୍କର ଜୟ
ଜୟ ରାଜକୁମାର ଶୈଳେନ୍ଦ୍ର ମାଧବଙ୍କର ଜୟ

ଯଶୋଧ୍ୱଜ – ଜ୍ୟେଷ୍ଠପୁତ୍ର ଧର୍ମରାଜ, କନିଷ୍ଠ ମାଧବ
ଆଜ ମୋ ଜୀବନର ଗୋଟିଏ ପରମ ସୌଭାଗ୍ୟର ଦିନ ।
ତୁମ ଦୁହିଁଙ୍କର ବାହୁବଳ ଓ ବୁଦ୍ଧି ଯୋଗୁଁ ମୁଁ ଆଜ
ନିଷ୍କଣ୍ଟକ ହୋଇଅଛି । ଏକ ଦିଗରେ ଦୁର୍ଦ୍ଧର୍ଷ ଦିର୍ଦ୍ଧନ
ପରାଜିତ ହୋଇ ସ୍ୱଦେଶ ଅଭିମୁଖରେ ପଳାୟମାନ,
ଅପର ଦିଗରେ କୋଶଳ ରାଜା ମଧ୍ୟ ପରାସ୍ତ ହୋଇ
ତାର କନ୍ୟାକୁ ଶୈଳେନ୍ଦ୍ର ମାଧବ ହସ୍ତରେ ସମର୍ପଣ କରିଛି
ଏବଂ ତା ସଙ୍ଗେ ସଙ୍ଗେ ରାଜ୍ୟ ମଧ୍ୟ ସମର୍ପଣ କରିଛି
ଏହାଠାରୁ ବଳି ଆଉ ଶୁଭ ମୁହୂର୍ତ୍ତ କଅଣ ହୋଇପାରେ ?

ମହାମନ୍ତ୍ରୀ – ମହାରାଜ, ଆପଣଙ୍କର ସୁପୁତ୍ରମାନଙ୍କ ଯୋଗୁଁ ଆଜ ସମଗ୍ର କଳିଙ୍ଗବାସୀ ଗୌରବାନ୍ୱିତ । କଳିଙ୍ଗର ନୌବାଣିଜ୍ୟ ଆଜି ସୁରକ୍ଷିତ ।

ସୌଦାଗର—ମହାରାଜ, ଆଜ ଆମ୍ଭମାନଙ୍କ ନିର୍ଯ୍ୟାତନାର ପ୍ରତିଶୋଧ ନେଇ ଆମ୍ଭମାନଙ୍କୁ ମୁକ୍ତିଦାନ କରିଅଛନ୍ତି, ଏଥିପାଇଁ ଆମ୍ଭମାନେ ଚିର ଋଣୀ । କ୍ଷମା ହେଲେ ଆମ୍ଭେମାନେ ଆମ୍ଭମାନଙ୍କର ଏକ ପ୍ରସ୍ତାବ ଉପସ୍ଥାପିତ କରିବୁ । ଏଥିପାଇଁ କ୍ଷମାଭିକ୍ଷା କରୁଛୁ, ମହାରାଜ !

ଯଶୋଧ୍ୱଜ—ତାହା କଅଣ, ପ୍ରିୟ ସୌଦାଗର !

ସୌଦାଗର – ମହାରାଜ, ଅଧୀନର ଦୋଷ କ୍ଷମା କରନ୍ତୁ, ବୀରବର ।

(ଗୀତ)

କ୍ଷମା କର ଦୋଷ ଅଧୀନର ହେ, ବୀରବର ।

ଯେ ପାଇଁ ଆସିଛୁ ବାବୁ ମନକଥା ପ୍ରକାଶିବୁ
ବାଳିଦ୍ୱୀପୁଁ ଶତ ସୌଦାଗର ହେ ବୀରବର ।୧।

ନଦନଦୀ ବନଗିରି ପ୍ରକୃତିର ଲୀଳାସ୍ଥଳୀ
ଧନଧାନ୍ୟ ପୂର୍ଣ୍ଣ ସେହି ପୁର ହେ ବୀରବର ।୨।

ବନଜ, ଖନିଜ ଦ୍ରବ୍ୟ ପୂରି ରହିଛି ସେ ଠାବ
ଶାନ୍ତି ଓ ସମୃଦ୍ଧି ନିରନ୍ତର ହେ ବୀରବର ।୩।

ଆମ୍ଭେ କଳିଙ୍ଗ ସନ୍ତାନେ ବସତି ଥାପି ସେ ସ୍ଥାନେ
ବହୁଯୁଗୁଁ କରୁ କାରବାର ହେ ବୀରବର ।୪।

କୃଷି ବାଣିଜ୍ୟ ସହିତ ହୋଇ ଧର୍ମ କାର୍ଯ୍ୟରତ
ଯାପୁଅଛୁ କାଳ ଆନନ୍ଦର ହେ ବୀରବର ।୫।

ହେମେ ଆମ୍ଭର ବସତି ପାଉଅଛି ବୃଦ୍ଧି ଅତି
ସୁଶୃଙ୍ଖଳା ଅଟେ ଦରକାର ହେ ବୀରବର ।୬।

ଦେଇ ଚିଠି ଏକ ସୁତ ଆହେ ରାଜା ଯଶୋବ୍ରତ
ପଠାଅ କେତେ ସେନା ସହିତର ହେ ବୀରବର ।୭।

ଶାନ୍ତି ରକ୍ଷା ଭାର ବହି ରହିବେ ସେ ହୋଇ ସ୍ଥାୟୀ
ଅନୁଗତ ହୋଇବୁ ତାଙ୍କର ହେ ବୀରବର ।୮।

କଳିଙ୍ଗ ବିଜୟ ବାନା ବିଦେଶେ ଉଡ଼ିଲେ ସିନା
ଯଶ କୀର୍ତ୍ତି ରହିବ ଆମ୍ଭର ହେ ବୀରବର ।୯।

ଯଶୋବ୍ରତ—ଯଥାର୍ଥ କହିଛ ମୋର ପ୍ରିୟ ସୌଦାଗର
ତୁମେ ତ ଏ ଦେଶର ଗୌରବ
କାଳେ କାଳେ ତୁମର ସୁଖ୍ୟାତି ଘୋଷୁଥିବ ମହୀ
ନିଶ୍ଚୟ ଶୀଘ୍ର କରିବି ସବୁ ବନ୍ଦୋବସ୍ତ

## ଦୃଶ୍ୟାନୁକ୍ରମ—ତେଇଶି

(ଏହି ସମୟରେ ଚୀନ ପରିବ୍ରାଜକ, ଜଣେ ଦୂତ ସହ ୨ୟ ମଞ୍ଚ ନିକଟରେ ପହଞ୍ଚିଲେ । ହୁଏନ୍‌ସାଂ ମଞ୍ଚ ସୋପାନରେ ଅପେକ୍ଷା କଲେ, ଦୂତ ପ୍ରବେଶି)

ଦୂତ—ପ୍ରଣାମ ମହିମା !
ଦ୍ୱାରଦେଶେ ଉପସ୍ଥିତ, ଜଣେ ଚୀନା ପର୍ଯ୍ୟଟକ ।

ଯଶୋଧ୍ୱଜ—ସସମ୍ମାନେ ଘେନିଆସ ଏଥି

ହୁଏନ୍‌ସାଂ—(ପ୍ରବେଶ କରି ପ୍ରଣାମାନ୍ତେ)
ବୁଦ୍ଧଂ ଶରଣଂ ଗଚ୍ଛାମି
ସଂଘଂ ଶରଣଂ ଗଚ୍ଛାମି
ଧମ୍ମଂ ଶରଣଂ ଗଚ୍ଛାମି
ଜୟ, ମହାରାଜ ଯଶୋଧ୍ୱଜଙ୍କର ଜୟ ।

ଯଶୋଧ୍ୱଜ—କଏ ତୁମେ ଆଗନ୍ତୁକ ?
କେଉଁ ଦେଶେ ଘର, କି ନାମ ତୁମ୍ଭର
କି ପାଇଁ ଆସିଛ ଏଥି, କି ବାର୍ତ୍ତା ଆଣିଛ
କିସ ପ୍ରୟୋଜନ ତବ ।

ହୁଏନ୍‌ସାଂ—ତେବେ ଶୁଣନ୍ତୁ ମହାରାଜ !

( ଗୀତ )

ହୁଏନ୍‌ସାଂ ନାମ ମୋହର, ଭାରତ ପଡ଼ଶା ଚୀନ ମୋ ଘର,
ହେ ମହାରାଜ, ବୁଲେ ମୁହିଁ ଦେଶାନ୍ତର ।୧।
ଅଟେ ମୁଁ ପରିବ୍ରାଜକ, ବୁଲୁଥାଏ ଦେଶ ବିଦେଶ ଯାକ,
ହେ ମହାରାଜ, ମନରେ ନ ରଖି ଧକ ।୨।
'କପିଳବାସ୍ତୁ' 'ଲୁମ୍ବିନି,' ସ୍ୱୟଂ ବୁଦ୍ଧଦେବ ଏ ସ୍ଥାନେ ଜନ୍ମି,
ହେ ମହାରାଜ, ଶ୍ରେଷ୍ଠ ତୀର୍ଥ ଦେବଭୂମି ।୩।
'ଉରୁବେଳା' ବନସ୍ତରେ, 'ଶାକ୍ୟସିଂହ' ବୋଧିଲାଭ ଉତ୍ସରେ,
ହେ ମହାରାଜ, ରହିଲେ କ୍ଷୁଧା ତୃଷାରେ ।୪।

ଭଲ୍ଲିକ, ତପସୁ ଭାଇ, ଏଇ ମାଟିର ଯେ ବଣିକ ଦୁଇ,
ହେ ମହାରାଜ, ଥିଲେ ତାହାଙ୍କୁ ଭୁଞ୍ଜାଇ ।୫।
ବୁଦ୍ଧ, ଧର୍ମରେ ଶରଣ, ଯେବେ ବୌଦ୍ଧ ସଂଘ କଲେ ଗଠନ,
ହେ ମହାରାଜ, ଈଶ୍ୱର ବୌଦ୍ଧ ପ୍ରଥମ ।୬।
କେଶସ୍ତୂପ, ନଖସ୍ତୂପ, ଆଦି ବୌଦ୍ଧ କୀର୍ତ୍ତି ତାଙ୍କର କୃତ,
ହେ ମହାରାଜ, ଅଛୁ କାବୁଲ ନିକଟ ।୭।
ଯେ ବନ୍ଧୁ ଏ ଦେଶବାସୀ, ବୌଦ୍ଧ ଦୀକ୍ଷା ଦେଲେ ମୋ ଦେଶେ ଆସି,
ହେ ମହାରାଜ, ଅନ୍ଧାର ଯାଇଛୁ ଖସି ।୮।
ଏ ଦେଶର ସୌଦାଗରେ, ସତ ବାଣିଜ୍ୟ ସଦ୍ଧର୍ମ ପ୍ରଚାରେ,
ହେ ମହାରାଜ, ବିଦେଶରେ ଘରେ ଘରେ ।୯।
ବୁଦ୍ଧ ବାଣୀ, ବୌଦ୍ଧ ଶାସ୍ତ୍ର, ବୋଧି ତତ୍ତ୍ୱରେ ମୁଁ ଅନୁପ୍ରାଣିତ,
ହେ ମହାରାଜ, ଭ୍ରମଣେ ହୋଇଛି ରତ ।୧୦।
ଦନ୍ତପୁର, ପୁଷ୍ପଗିରି, ପରିମଳ ଗିରି, ସୁରଭି ଗିରି,
ହେ ମହାରାଜ, ଯୋଗପୀଠ ରତ୍ନଗିରି ।୧୧।
ଘୋରଶୈଳ, ତାମ୍ରଲିପ୍ତ, ଚେଳିତାଲୋ ଆଦି ଯେ ବୌଦ୍ଧ ପୀଠ,
ହେ ମହାରାଜ, ଭ୍ରମିବି କଲି ପ୍ରକଟ ।୧୨।
କଳିଙ୍ଗ, କଙ୍ଗୋଦ ଉଡ୍ର ଏ ତ୍ରୀରାଜ୍ୟରେ ତୁମେ ଅଧୀଶ୍ୱର,
ହେ ମହାରାଜ, କ୍ଷମ ଅପରାଧ ମୋର ।୧୩।
ତୁମ ଦେଶ ଗଉରବ, ସ୍ୱର୍ଣ୍ଣାକ୍ଷରେ ଇତିହାସେ ରହିବ,
ହେ ମହାରାଜ, ଚିରକାଳ ଗାଉଥିବ ।୧୪।
ମୋର ଯାତ୍ରା ହେଲେ ଶେଷ, ଲେଖିବି ମୁଁ ବିବରଣୀ ଅଶେଷ,
ହେ ମହାରାଜ, ତାହା କଲି ପରକାଶ ।୧୫।

ଯଶୋଧ୍ୱଜ—ସାଧୁ ସାଧୁ ପର୍ଯ୍ୟଟକ,
ଯେତେ ଦିନ ଇଚ୍ଛା ତୁମେ
ରୁହ ମୋ ରାଜ୍ୟରେ, ରାଜ୍ୟ ଅତିଥି ସ୍ୱରୂପ
କନିଷ୍ଠ ତନୁଜ ମୋର ଶୈଳେନ୍ଦ୍ରମାଧବ
ସୁଗୁରୁ ରୂପେ କରିବ ସକଳ ବ୍ୟବସ୍ଥା।

ଶୈଳେନ୍ଦ୍ରମାଧବ—ଯେ ଆଜ୍ଞା ପିତୃଦେବ !
ଆସନ୍ତୁ ପର୍ଯ୍ୟଟକ ମହୋଦୟ

ହୁଏନ୍‌ସାଂ—ଭଗବାନ ବୁଦ୍ଧ ଆପଣମାନଙ୍କୁ ଆଶୀର୍ବାଦ ଦଅନ୍ତୁ ।
ବୁଦ୍ଧଂ ଶରଣଂ ଗଚ୍ଛାମି, ସଂଘ ଶରଣଂ ଗଚ୍ଛାମି,
ଧମ୍ମଂ ଶରଣଂ ଗଚ୍ଛାମି ।
(ହୁଏନ୍‌ସାଂ ସହ ଶୈଳେନ୍ଦ୍ରମାଧବଙ୍କର ପ୍ରସ୍ଥାନ)

## ଦୃଶ୍ୟାନୁକ୍ରମ—ଚବିଶ

ଯଶୋଧ୍ୱଜ—ଶୁଣିଲ ତ ସବେ, ଏହି ପର୍ଯ୍ୟଟକ ମୁଖୁ
କଙ୍ଗୋଦର ବିଶାଳ ଗୌରବ
ଧନ୍ୟ, ଧନ୍ୟ ସାଧୁ ସୌଦାଗରେ
ମାତୃଭୂମି ତୁମଲାଗି ସ୍ୱତଃ ମୁଁ ଗର୍ବିତ
ହେ ଯୁବରାଜ, ତୁମଠାରେ କଲି ଭାର ନ୍ୟସ୍ତ
ବଂଶ ସପ୍ତ ନାଗରିକ କର ମନୋନୀତ
କଙ୍ଗୋଦର ଶାନ୍ତ ଦୃଢ ନୌ ସେନା ନିମନ୍ତେ
ହେଁ ! ମହାମନ୍ତ୍ରୀ ସତ୍ୟସନ୍ଧ !
ହୋଇଛୁ ମୁଁ ବୃଦ୍ଧ । ମୋର ଇଚ୍ଛା ରହିବାକୁ ଧର୍ମକାର୍ଯ୍ୟେ ରତ ।
ରାଜ୍ୟ ଶାସନ ପାଇଁ ମୁହିଁ ହେବା ପ୍ରବରୁ ଅଯୋଗ୍ୟ
ଯୁବରାଜ ଅଭିଷେକ ପାଇଁ କର ବନ୍ଦୋବସ୍ତ
ଚଳିବି ମୁଁ ତେବେ ବାନପ୍ରସ୍ଥେ ।

ମହାମନ୍ତ୍ରୀ—ଯେ ଆଜ୍ଞା ମହାରାଜ ।
(ଜୟଧ୍ୱନି) ଜୟ କଙ୍ଗୋଦାଧିପତି ମହାରାଜ ଯଶୋଧ୍ୱଜଙ୍କର ଜୟ
(ସଙ୍ଗୀତ ସହିତ ସମସ୍ତଙ୍କର ପ୍ରସ୍ଥାନ, ୨ୟ ମଞ୍ଚ ଅନ୍ଧକାର)

## ଦୃଶ୍ୟାନୁକ୍ରମ—ପଚିଶ

(ସଙ୍ଗୀତ ପରିବର୍ତ୍ତନ ସଙ୍ଗେ ସଙ୍ଗେ ୧ମ ମଞ୍ଚ ଆଲୋକିତ ହେଲା
ଓ ୧ମ ମଞ୍ଚରେ ଡବର ଓ ଶୈଳେନ୍ଦ୍ରମାଧବ ପ୍ରବେଶ କଲେ)

ଡବର—ପୁଅ ଶୈଳେନ୍ଦ୍ରମାଧବ
ଯଦି କିଛି ମନେ ନ କରିବ
କହିବି ମୁଁ ମୋର ମନକଥା

ଶୈଳେନ୍ଦ୍ର ମାଧବ – ସାନନ୍ଦେ ବ୍ୟକ୍ତ କରନ୍ତୁ ପିତା –

(ଗୀତ)

ଈବର—ଯଦି ଶୈଳେନ୍ଦ୍ର ମାଧବ, କିଛି ମନେ ନ କରିବ
କହିବି ରାଜନୀତି କଥା, ପାଳିବି ମୋ କରତବ୍ୟ ।୧।
ଜଟିଳ ଏ କୂଟନୀତି, କୁଟୀଳ ତାର ରୀତି
ସ୍ୱାର୍ଥପର ନୋହି କେହୁ, ବଢ଼ାଇ ପାରେ ବିଭବ ? ।୨।
ବରିଛି ତୁମ୍ଭେ ଜାମାତା, ଦେଇ ମୋ କନ୍ୟା ସୁମିତ୍ରା
ସମର୍ପିଛି ରାଜ୍ୟଭାର, ତୁମେ ମୋର ଗଉରବ ।୩।
ତୁମ୍ଭ ପିତା ଯଶୋଧିତ, ତୁମ୍ଭ ପ୍ରତି ପକ୍ଷପାତ
କରିଅଛନ୍ତି କି ନାହିଁ, ଏହା ଥରେ ମନେ ଭାବ ।୪।
ଧର୍ମରାଜ ହେବ ରାଜା, ତୁମେ ସେନାପତି ହେଜା
ତହିଁ ତୁମର ଅସ୍ତିତ୍ୱ, ଅଧିକାର କି ନ ହେବ ।୫।
ହୋଇ ଯଥା ଯୋଗ୍ୟସୁତ, ଜଗିବ ତା'ର ସୀମାନ୍ତ
ଯବନ ଶତ୍ରୁ କବଳୁ, ରାଜ୍ୟ ରକ୍ଷା କରୁଥିବ ।୬।
ବଳ, ବୀର୍ଯ୍ୟ ପରାକ୍ରମ, ଜଣାଅଛି କେଉଁ ଗୁଣ
ସବୁ ଥାଇ ଅଶାନ୍ତରେ, ଚିରଦିନ ବିତିଯିବ ।୭।

ଶୈଳେନ୍ଦ୍ର ମାଧବ—ପିତା ! ଏକ ଦିଗୁଁ ବିଚାରିଲେ
କଙ୍ଗୋଦ ସାମ୍ରାଜ୍ୟ ପାଇଁ, ଏହା ଏକ ସୁରକ୍ଷା ବ୍ୟବସ୍ଥା
ଦକ୍ଷିଣ, ପଶ୍ଚିମେ ତୁମ୍ଭ ସ୍ଥିତି ହେଲୁ
ନାହିଁ କିଛି ବିପଦ ଆଶଙ୍କା
ଉତ୍ତର ସୀମାନ୍ତେ ନେବି ମୁହିଁ ପ୍ରତିରକ୍ଷା ଭାର

ଈବର—ହଁ, ହଁ, କେବଳ ମେତିକି ନୁହେଁ
ତେଣେ, ମଧ୍ୟଜଙ୍ଗଲର କଙ୍ଗୋଦ ରାଜନ
ନିର୍ବିଘ୍ନରେ ଥିବ ହୋଇ ମହାମାନ୍ୟ
ବିପଦକୁ ତୁମ ପରେ ଢାଳି
ଐଶ୍ୱର୍ଯ୍ୟ, ସମ୍ପଦେ ଥିବ ଭ୍ରାତା ଧର୍ମରାଜ ।

ଶୈଳେନ୍ଦ୍ରମାଧବ—ଶୈଳେନ୍ଦ୍ର ମାଧବ, ତଡିନାହିଁ ବିପଦକୁ କେବେ
ଭ୍ରାତା ଧର୍ମରାଜ, ଜ୍ୟେଷ୍ଠ ପୁତ୍ର ରୂପେ

କଙ୍ଗୋଦର ପରମ୍ପରାନୁଯାୟୀ
ସିଂହାସନେ ନ୍ୟାଯ୍ୟ ଅଧିକାରୀ, ଅବଶ୍ୟ !
କିନ୍ତୁ ! ଘନ ଘନ ବିପଦ ଓଗାଳି
କାଟିବି ମୁଁ ସମସ୍ତ ଜୀବନ ସେନାପତି ରୂପେ
ପିତା, କିନ୍ତୁ ମୁହିଁ ଭାବି ନ ପାରଇ
କିନ୍ତୁ ସୁଖ ରଖିଛନ୍ତି ମନେ ?

(ଗୀତ)

ତେବର—ରଖିଛୁ, ରଖିଛୁ, ସୁଖ, ମନେ ରଖିଛୁ
ଯେ ଦିନୁ ତୁମେ ଜାମାତା, ରୂପେ ବରିଛୁ ।୧।
ଏକମାତ୍ର କନ୍ୟା ମୋର, ସମର୍ପିଛୁ ଯେଉଁକର
ସାଥେ ରାଜ୍ୟଭାର ସବୁ, ଦେଇ ଦେଇଛୁ ।୨।
ଦୁହିଁଙ୍କର ସୁଖବନା, ମୋତେ ଆନ ନାହିଁ ଜଣା
ଲୋଡା ନାହିଁ ଏ ଜୀବନେ, ଆଉ ହେ କିଛୁ ।୩।
କରିବାକୁ ଯେଉଁ କାମ, ହେବ ଶୁଣ ଦେଇମନ
ଲଭିବ ବିଜୟ ଧନ, ମୁଁ ବତାଉଛୁ ।୪।
ଚଳ ଉତ୍ତର ପଶ୍ଚିମ, ଧରି ତବ ସେନାଗଣ
ଲଢିବା ପାଇଁ ତୁରନ୍ତ, ଥିବ ପ୍ରସ୍ତୁତ ।୫।
ଭାଇ ଅଭିଷେକ ଦିନ. ମୋ ଠାରୁ ସଙ୍କେତ ଘେନ
କଙ୍ଗୋଦରେ ପଶ ଧସି, ପ୍ରାଣ ମୁରୁଛୁ ।୬।
ତୁମେ ଘେର ଉତ୍ତରରୁ, ମୁଁ ଘେରିବି ଦକ୍ଷିଣରୁ
ରାହା ନ ପାଇ ସେ ବନ୍ଧ, ହେବ ଜାଣଟି ।୭।
ଏ କଥା କଲେ ମାଧବ, ଚିର ଦୁଃଖ ଦୂର ହେବ
ବିଶାଳ କଙ୍ଗୋଦେ, ହେବ, ମହାରାଜାଟି ।୮।

ଶୈଳେନ୍ଦ୍ର ମାଧବ—ଚମତ୍କାର ଅଟେ ତୁମ ରାଜ-କୂଟମନ୍ତ୍ର
ଅଚିରେ ଚଳିଲି ମୁହିଁ ଉତ୍ତର ପଶ୍ଚିମେ ।

ତେବର—ଯାଅ ବତ୍ସ ଆଶୀର୍ବାଦ କରେ
ରଣେ ହୁଅ ହିର୍ ବିଜୟୀ ।
(ଉଭୟଙ୍କ ପ୍ରସ୍ଥାନ । ୧ମ ମଞ୍ଚ ଅନ୍ଧକାର ହେଲା, ସଙ୍ଗୀତ ଗୁଞ୍ଜିଲା)

## ଦୃଶ୍ୟାନୁକ୍ରମ – ଛବିଶ

(ଏହି ସମୟରେ ପୂର୍ବରୁ ମାଡ଼ଖାଇ ପଳାୟନ କରିଥିବା ୧ମ ଚର ୧ମ ମଞ୍ଚକୁ ପ୍ରାନ୍ତରର ଗୋଟିଏ କୋଣରୁ ଘୋଷାରେଇ ଘୋଷାରେଇ ପ୍ରବେଶ କରି)

୧ମ ଚର – ବାଆଃ, ବାଆଃ, ବାଆଃ

ଭଲ ଶଶୁର ତ

ଜୋଇଁକୁ ଘରଭଙ୍ଗା ପାଠ ଶିଖଉଛି

ଦେଖ ହୋ

ଦୁନଆଁଟାକୁ ଏ ଶଶୁରଗୁଡ଼ା ସାରି ସାରିଲେଣି

(ଗୀତ)

ସାରିଲେ ଏ ଦୁନଆଁଟା ଶ୍ୱଶୁର ଜାତ
ତେଣୁ ସିନା ଏ ଦେଶର ଏହି ଦୁର୍ଗତି
ଆଗ ଜନ୍ମ ଦେଇ ଝିଅ, ଖୋଜୁଥିବେ କାହିଁ ପୁଅ
ହାଇଁ ପାଇଁ ହେଉଥିବେ ଦିବସ ରାତି ।୧।
ଗାଉଥିବେ ଝିଅ ଗୁଣ, ହେଉ ସେ ସବୁରେ ଶୁନ
ଯାଚୁଥିବେ ଯଉତୁକ ହାତକୁ ପାତି ।୨।
ମିଳିଗଲେ ତ ବକରା ଆଉ ନ ହୁଏ ହକରା
ଛେଳି କରି ପାରନ୍ତି ସେ ବଣୁଆ ହାତୀ ।୩।
ଫୁସୁଲା ଫୁସୁଲା କରି, ଜୋଇଁକ ଦିଅନ୍ତି ସାରି
ଘରଭଙ୍ଗା ପାଠରେ ସେ ଯାଆନ୍ତି ମାତି ।୪।
ବାପ ପୁଅ ଭାଇ ଭାଇ ବିବାଦକୁ ଉପୁଜାଇ
ବଣ୍ଟା ବଣ୍ଟି ହେବାଯାଏ ଧନ ସମ୍ପତ୍ତି ।୫।
ସେଥିପାଇଁ ପରା ମୁହିଁ, ଏ ଯାଏ ବାହା ହେଇନି
ଆଉ କଅଣ ବାହା ହେବି, ହେଲଣି ପାତି ।୬।

(କଥା) କା ଆଗେ କହିବି ?

ଏତ ବଡ଼ ଲୋକଙ୍କ କଥା

ମୋର ବଗଟେ ପିଳେହି ପାଣି ହେଇ ଯାଉଛି

(ଏହା କହି ଗୋଡ଼ ଘୋଷାରି ଘୋଷାରି ଘୋଷାରି ଗୋଡ଼ ଭଲ ହୋଇଯିବା, ୧ମ ଚରର ଶୀଘ୍ର ପ୍ରସ୍ଥାନ)

# ଦୃଶ୍ୟାନୁକ୍ରମ—ସତେଇଶି

(୨ୟ ମଞ୍ଚ ଆଲୋକିତ ହେଲା, ସଙ୍ଗୀତ ପରିବର୍ତ୍ତନ ସଙ୍ଗେ ସଙ୍ଗେ ପୁରୋହିତ, ଧର୍ମରାଜ, ମହାମନ୍ତ୍ରୀ, ରାଜପଣ୍ଡିତ, ବିଦୂଷକ, ଦୂତ ୨ୟ ମଞ୍ଚକୁ ଆସିଲେ, ଅଭିଷେକ ଉତ୍ସବ, କମାଣ ଶବ୍ଦ ତା ପରେ ରାଜପଣ୍ଡିତ ଶ୍ଳୋକ ପାଠ କଲେ । ପୁରୋହିତ ଧର୍ମରାଜଙ୍କୁ ସିଂହାସନରେ ବସାଇ ମୁକୁଟ ପିନ୍ଧାଇଲେ—ଇତ୍ୟାଦି ।)

ପୁରୋହିତ—ଆଜ ଠାରୁ ଯୁବରାଜ ଧର୍ମରାଜ କଙ୍ଗୋଦାଧିପତି ରୂପେ ଅଧିଷ୍ଠିତ ହେଲେ ।

ମହାମନ୍ତ୍ରୀ—ଜୟ ଶ୍ରୀ ମହାରାଜ, ମହାସାମନ୍ତ କଙ୍ଗୋଦାଧିପତି ରାଜନ୍ୟ ମୁକୁଟମଣି ଶ୍ରୀ ଶ୍ରୀ ଶ୍ରୀ ଧର୍ମରାଜ ମାନସିଂହଙ୍କର ଜୟ ।

(ବିଦୂଷକର ଇଙ୍ଗିତରେ ନର୍ତ୍ତକୀ ପ୍ରବେଶ କଲା ଏବଂ ମାନ୍ୟାନ୍ତେ ନୃତ୍ୟ । ନୃତ୍ୟ ସରି ଆସିବା ବେଳକୁ ବିଦୂଷକ ଅତି ଆନନ୍ଦରେ)

ବିଦୂଷକ—ଜୟ ମହାରାଜ ଧର୍ମରାଜ ମାନସିଂହଙ୍କର ଜୟ ।

(ଠିକ୍ ଏତିକି ବେଳେ ୧ମ ମଞ୍ଚ ଆଲୋକିତ ହେଲା ଏବଂ ସେଠାରେ ହତିଆର ସହ ସୈନ୍ୟମାନେ ସଜ୍ଜିତ ଥିବାର ଦେଖାଗଲା)

ସେମାନେ—ଜୟ ମହାରାଜ ଶୈଳେନ୍ଦ୍ରମାଧବଙ୍କର ଜୟ ।

(ଏହି ଜୟଧ୍ୱନି ଶୁଣି ସମସ୍ତେ ୧ମ ମଞ୍ଚ ଆଡ଼କୁ ଚାହିଁଲେ । ଠିକ୍ ସେତିକି ବେଳେ ୩ୟ ମଞ୍ଚରେ ଶୈଳେନ୍ଦ୍ରମାଧବ ଓ ସୈନ୍ୟମାନେ ସଜ୍ଜିତ ହୋଇଥିବାର ଦେଖାଗଲା)

ସେମାନେ—ଜୟ ମହାରାଜ ଶୈଳେନ୍ଦ୍ରମାଧବଙ୍କର ଜୟ ।

(ଏହି ଜୟଧ୍ୱନି ପୁଣି ସମସ୍ତେ ୩ୟ ମଞ୍ଚ ଆଡ଼କୁ ଚାହିଁଲେ । ଠିକ୍ ସେତିକି ବେଳେ ୨ୟ ମଞ୍ଚ ପଛରୁ ସୈନ୍ୟମାନେ ଘେରାଉ କରିବାର ଦେଖାଗଲା ।)

ସେମାନେ—ଜୟ ମହାରାଜ ଶୈଳେନ୍ଦ୍ରମାଧବଙ୍କର ଜୟ

ଧର୍ମରାଜ—ବନ୍ଦକର ଏ ଉତ୍ସବ

ଆଜ ମୋର ଏହି ଅଭିଷେକୋତ୍ସବ

କିସ ପୁଣି ଶୁଭେ ଗଣ୍ଡଗୋଳ

(ଠିକ୍ ଏତିକିବେଳେ ୨ୟ ମଞ୍ଚ ଘେରାଉ କରିଥିବା ସୈନମାନେ
୨ୟ ମଞ୍ଚର ସମ୍ମୁଖରେ ଆସି ଘେରାଉ କଲେ ଏବଂ ସେମାନଙ୍କ
ସହିତ ୧ମ ଓ ୩ୟ ମଞ୍ଚରୁ—)

ଜୟ ମହାରାଜ ଶୈଳେନ୍ଦ୍ର ମାଧବ ରାଜାଙ୍କର ଜୟ

ଧର୍ମରାଜ—ମହାମନ୍ତ୍ରୀ, କହିକ ପାରିବ, ଆଜ ଏ ଉତ୍ସବେ
ମୋର କନିଷ୍ଠ ଭ୍ରାତା ଶୈଳେନ୍ଦ୍ର ମାଧବ
କିମ୍ପା ନାହିଁ ଉପସ୍ଥିତ ।

(ଏହି ସମୟରେ ୧ମ ଚର ମଞ୍ଚ ଚତୁଃ ପାର୍ଶ୍ୱରେ ଦଉଡ଼ ଦଉଡ଼
୨ୟ ମଞ୍ଚରେ ପ୍ରବେଶ କଲା)

ଚର—ମହାରାଜ, କ୍ଷମ ଅପରାଧ,
କରୁଛ ଅପ୍ରିୟ ସତ୍ୟ ପ୍ରକାଶୁଛୁ ମୁହିଁ
ତବାନୁଜ ଶୈଳେନ୍ଦ୍ର ମାଧବ, ଆଜ କରୁଛି ବିଦ୍ରୋହ
ସଙ୍ଗେ ତାର କୋଶଳ ରାଜନ
ଚତୁର୍ଦ୍ଦିଗୁଁ ରଚିଛନ୍ତି ବ୍ୟୂହ, ଆପଣଙ୍କୁ ଗାଦିଚ୍ୟୁତ କରିବାର ପାଇଁ
ଶୀଘ୍ର ଏଥୁଁ ପଳାୟନ କର
ରକ୍ଷାକର ତବ ଅମୂଲ୍ୟ ଜୀବନ ।

(ଏକଥା ଶୁଣି ବିଦୂଷକ ମଞ୍ଚରୁ ତଳକୁ ଡେଇଁପଡ଼ିଲା ଓ ନର୍ତ୍ତକୀକୁ
ଟାଣିନେଇ ପଳାୟନ)

ଧର୍ମରାଜ—ହାଃ, ହାଃ, ହାଃ, ହାଃ, ହା
ଦୁର୍ବଳ ମାନବ ସିନା ଡରଇ ମୃତ୍ୟୁକୁ
ଧର୍ମରାଜ ଡରେ ନାହିଁ କା'କୁ
ପିତୃଦେବ !
ଦେଖନ୍ତୁ ସେ ପିତୃଦ୍ରୋହୀ, ଭାତୃଦ୍ରୋହୀର ବିଶ୍ୱାସଘାତକତା
ଶ୍ୱଶୁରର ପ୍ରେରଣାରେ କରୁଛି ବିଦ୍ରୋହ ଆଜ ଶୈଳେନ୍ଦ୍ର ମାଧବ
ରାଜଦ୍ରୋହେ ଅପରାଧୀ ସିଏ ।

ଯଶୋବନ୍ତ—ଦିଅ ବସ୍ତ୍ର ଦିଅ ତାକୁ ସମୁଚିତ ଶାସ୍ତି
ରଣାଙ୍ଗନେ ଭେଟି ।

(ଅସ୍ତ୍ରଦାନ ଓ ପ୍ରସ୍ଥାନ—ମନ୍ତ୍ରୀ ଓ ଅନ୍ୟମାନେ ପ୍ରସ୍ଥାନ)

## ଦୃଶ୍ୟାନୁକ୍ରମ—ଅଠେଇଶି

(ଯଶୋବନ୍ତ ଓ ମନ୍ତ୍ରୀଙ୍କ ପ୍ରସ୍ଥାନ ସଙ୍ଗେ ସଙ୍ଗେ ଅନ୍ତରାଳରୁ ଧର୍ମରାଜଙ୍କ ସୈନ୍ୟମାନେ ଦୁଇଟି ଧାଡ଼ିରେ ୨ୟ ମଞ୍ଚ ପଶ୍ଚାତ୍ ଭାଗକୁ ଆସି ତବର ଓ ଶୈଳେନ୍ଦ୍ର ମାଧବଙ୍କ ସୈନ୍ୟମାନଙ୍କ ବିରୁଦ୍ଧରେ ମୁକାବିଲା ପାଇଁ ପ୍ରସ୍ତୁତ ହୋଇଗଲେ । କ୍ରମେ ଦୁଇଟି ମୁଖ୍ୟ ଦଳ ମୁହାଁମୁହିଁ ଯୁଦ୍ଧ ପାଇଁ ସଜ୍ଜିତ ହୋଇଗଲେ, ଗୋଟିଏ ଧର୍ମରାଜ ଏବଂ ତବର ବାହିନୀ, ଅନ୍ୟଟି ଧର୍ମରାଜ ଏବଂ ଶୈଳେନ୍ଦ୍ର ମାଧବଙ୍କ ସୈନ୍ୟଗଣ । ଶୈଳେନ୍ଦ୍ର ମାଧବ ୩ୟ ମଞ୍ଚରେ ଧର୍ମରାଜ ୨ୟ ମଞ୍ଚରେ ଏବଂ ତବର ୧ମ ମଞ୍ଚରେ ଥିବା ଅବସ୍ଥାରେ)

ଶୈଳେନ୍ଦ୍ର ମାଧବ—ଧର୍ମରାଜ ତୁମେ ମୋର ଜ୍ୟେଷ୍ଠଭ୍ରାତା ହୋଇ
ପିତାଙ୍କ ହତ୍ୟା ସଲା କରି, ମୋ ପ୍ରତି ଯେଉଁପରି ବିଶ୍ୱାସଘାତକତା
କଲ, ତାର ପ୍ରତିଫଳ ଭୋଗିବ ଅବଶ୍ୟ ।

ଧର୍ମରାଜ — ଛି, ଛି, ଶ୍ରେଷ୍ଠ ମୁଖେ ବଡ଼ କଥା ଆଉ ଶୋଭା ପାଏନି ମାଧବ ।
ଆଜିଯାଏ ଶ୍ରେଷ୍ଠ ଭାଇ ବୋଲି,
ତୋତେ କରିଅଛି ସ୍ନେହ,
ଏହି କି ତା ଶେଷ ପରିଣାମ ?

ଶୈଳେନ୍ଦ୍ର ମାଧବ—ଥାଉ, ଥାଉ କଥାର ଚାତୁରୀ
କଙ୍ଗୋଦର ରାଜ ସିଂହାସନେ ଯଦି ତୁହି ଭାବୁ
ଉପଯୁକ୍ତ ଅଧିକାରୀ, ତା ହେଲେ ତୁ
ନ କର ବିଳମ୍ବ, ଧର ଅସ୍ତ୍ର କର ରଣ ମୋର ସଙ୍ଗେ
ଏହି ଯୁଦ୍ଧକ୍ଷେତ୍ରେ, ହେବ ତୋର ଭାଗ୍ୟର ନିଷ୍ପତ୍ତି

ଧର୍ମରାଜ— ଶୈଳେନ୍ଦ୍ର ମାଧବ ! ମୋର ପ୍ରାଣର ଅନୁଜ
କିପରି ଧରିବି ଅସ୍ତ୍ର ମୁଁ ତୋର ବିରୁଦ୍ଧେ
ଯଦି ଏହା ଥିଲା ତୋର ମନେ
ପୂର୍ବେ ସ୍ୱାଭାବେ କିମ୍ପା ନ କଲୁ ପ୍ରକାଶ
ଦେଇଥାନ୍ତି ରାଜ୍ୟଭାର ଛାଡ଼ି
ରାମାୟଣେ, ରାମଚନ୍ଦ୍ର ପରି ।

ଶୈଳେନ୍ଦ୍ରମାଧବ—ହାଃ, ହାଃ, ହାଃ, ହାଃ, ହାଃ,

(ଗୀତ)

ଧର୍ମରାଜ—ଭାଇ ଶୁଣ ମୋ କଥା, ନ ଦିଅ ବ୍ୟଥା, ତୋ ଭାଇ ମନରେ
ତବର ଅଭିସନ୍ଧି, ନ ବୁଝି ଧନ୍ଦ, ହେଉଛୁ ସିନା ରେ ।୧।
ସେ କୋଶଳ ରାଜନ, କଙ୍ଗୋଦ ଶତ୍ରୁ ଜାଣ,
ଦେଇ କନ୍ୟାକୁ ତାର, କିଣିଲା ତୋର, ଚପଳ ମନ ରେ ।୨।
ତା କଥାରେ ତୁ ପଡ଼ି, ଗଲୁକ ସବୁ ହୁଡ଼ି,
ହୋଇ କଙ୍ଗୋଦ ସୁତ, କପରି ତୁ ତ, କଲୁ ଏ କାମ ରେ ।୩।
ତୋ ସମ ଭାଇ ପ୍ରତି, କଲି ମୁଁ କେବା କ୍ଷତି,
କାହିଁ ବୃଥା କଥାରେ, ହାରୁ ମଥାରେ, ତୁ ଅଭିମାନରେ ।୪।
ହେଲୁ ତୁ ରାଜଦ୍ରୋହୀ, ଏ କଥା ଭୁଲ ନାହିଁ,
ଦଣ୍ଡ ପାଇବୁ ଆପେ, ସେ ଅନୁରୂପେ, ଏ କଥା ଜାଣ ରେ ।୫।

ଶବର—ହାଃ, ହାଃ, ହାଃ, ହାଃ, ହା
ମୂର୍ଖ ଧର୍ମରାଜ ନ କର ବଢ଼ାଇ
ବୃଥା କାଳକ୍ଷେପେ, ନ କର ବିଳମ୍ବ
ପଣ ଶୀଘ୍ର ପରୀକ୍ଷା ସମରେ

ଧର୍ମରାଜ—ଜାଣେ ମୁହିଁ, ମାତ ନୁହେଁ ମୋର ସାନଭାଇ
ତୁହି ଖେଳୁ ଶକୁନିର ଖେଳ
ତାର ଯୁବା ବୟସର ସୁବିଧା ତୁ ନେଇ
ଭଣ୍ଡାଇଲୁ କନ୍ୟା ଦେଇ ତା'ରେ
କିନ୍ତୁ କୋଶଳ ରାଜନ, ନ ପାରିବୁ ଜିଣି ମୋତେ
ଧର୍ମରାଜ ଦେବ ତୋର ସବୁ ପଣ୍ଡ କରି
ଶୈଳେନ୍ଦ୍ରମାଧବ, ଆଉ ଥରେ ଦେଖ ଚିନ୍ତା କରି
ବଂଶଗତ ଭାବେ ମୋର ସାନ ଭାଇ ବୋଲି ତତେ
ବୁଝାଇଲି ସିନା, କିନ୍ତୁ କଙ୍ଗୋଦର ଅଧିପତି ରୂପେ
ଦେଉଛି ଆଦେଶ । ଆଜ ତୁହି ରାଜଦ୍ରୋହୀ
ଏବଂ ରାଜଦ୍ରୋହର ପରିଣାମ ଅତ୍ୟନ୍ତ ନିଷ୍ଠୁର ।

ଶୈଳେନ୍ଦ୍ରମାଧବ—ବୃଥା ବାକ୍ୟାଳାପେ ପ୍ରୟୋଜନ କିସ ?
ଆସ ଶୀଘ୍ର ପଶ ରଣେ ।

ଉଦର—ନ କର ବିଳମ୍ବ

## ଦୃଶ୍ୟାନୁକ୍ରମ—ଅଣତିରିଶି

(ଯୁଦ୍ଧ—୨ୟ ମଞ୍ଚରେ ଧର୍ମରାଜ ରକ୍ତ ଯୁଦ୍ଧ କରୁଛି, ଉଦର ୧ମ ମଞ୍ଚରୁ ଓ ଶୈଳେନ୍ଦ୍ରମାଧବ ୩ୟ ମଞ୍ଚରୁ ଡେଇଁ ଯୋଗାଡ଼ କରି ବୃତ୍ତାକାରରେ ୨ୟ ମଞ୍ଚ ଚତୁଃପାର୍ଶ୍ୱରେ ଘୂରି ଯୁଦ୍ଧ କରୁଛନ୍ତି, କ୍ରମେ ଧର୍ମରାଜ ସେଇ ବୃତ୍ତର କୌଣସି ସ୍ଥାନକୁ ବଡପାଟ ମୁଷ୍ଟି ଦ୍ୱାରେ ଡେଇଁ କ୍ରମେ ସେହି ବୃତ୍ତକୁ ପଛଆଡ଼ୁଆ ଘୁଞ୍ଚାଇ ନେପଥ୍ୟକୁ ଫେରି ଯାଉଛନ୍ତି । ସବୁ ମଞ୍ଚ ଅନ୍ଧକାର, ସେଇ ଯୁଦ୍ଧ ପୁଣି ନେପଥ୍ୟରୁ ବାହାରି ୩ୟ ମଞ୍ଚ ପଛ ପାଖରୁ ଆସି ପ୍ରବେଶ କରୁଛି । ଧର୍ମରାଜ ମଞ୍ଚ ଅଧିକାର କରି ଠିଆ ହେଉଛି ଏବଂ ଗୋଟି ଗୋଟି କରି ପ୍ରତ୍ୟେକ ସୈନ୍ୟଙ୍କୁ ଧକ୍କା ଦେଇ ମଞ୍ଚରୁ ଖସାଇ ପକାଉଛି, ପରେ ଆସିଛି ଶୈଳେନ୍ଦ୍ରମାଧବ ଯୁଦ୍ଧରେ ଶୈଳେନ୍ଦ୍ରମାଧବର ଖଣ୍ଡା ଖସି ପଡ଼ୁଛି, ଧର୍ମରାଜ ତାକୁ ଖଣ୍ଡା ଦେଖାଇଛି ଓ ଘଉଡ଼ାଇ ପଛାଇ ମଞ୍ଚର ଗୋଟିଏ କୋଣ ପର୍ଯ୍ୟନ୍ତ ନେଇ ଯାଇଛି ।)

(ଜୟଧ୍ୱନି)—ଜୟ ଧର୍ମରାଜ ମାନଖାତଙ୍କର ଜୟ ।

## ଦୃଶ୍ୟାନୁକ୍ରମ—ତିରିଶି

ଧର୍ମରାଜ—ବର୍ତ୍ତମାନ ?

(ଧର୍ମରାଜ ଡାହାଣ ଉର୍ଦ୍ଧ୍ୱଶ୍ୟରେ ଖଡ୍ଗ ଉତ୍ତୋଳନ କଲେ ଏବଂ କ୍ରମଶଃ ଶୈଳେନ୍ଦ୍ରମାଧବ ମୁଖ ନିକଟକୁ ନିଜ ମୁଖ ଆଣି ସାନ ଭାଇର ମୁଖଦର୍ଶନରେ ହଠାତ୍ କ୍ରୋଧ ଶାନ୍ତ କଲେ ଏବଂ ସ୍ନେହ-ଭରା କଣ୍ଠରେ କହିଲେ)

ଧର୍ମରାଜ—ଭାଇ, ପ୍ରାଣର ଅନୁଜ, ଶୈଳେନ୍ଦ୍ରମାଧବ
ଓଃ ! ତୋ ସଙ୍ଗେ ପୁଣି ମୁଁ ଆଜ କରିଲି ସମର
କି କହିବ ଏ ଜଗତ ଆଜ ?

ନା, ହେବନାହିଁ, ହେବନାହିଁ ମୋହଦ୍ୱାରା ତାହା ।
ଆକ୍ଷତ୍ରୀୟ କାର୍ଯ୍ୟ ବୋଲି ଘୋଷୁ ପଛେ ମନ୍ତ୍ରୀ,
ହେଉ ପଛେ କଳଙ୍କିତ ମୋର ଏହି ନାମ,
କିନ୍ତୁ ନ ପାରିବ ଧରି ଅସ୍ତ୍ର ଭ୍ରାତାର ବିରୁଦ୍ଧେ ।
ଘୋଷୁ ପଛେ ଇତିହାସ ଏହି "ଫାସିକ" ସମରେ,
ଜ୍ୟେଷ୍ଠଭ୍ରାତା ଧର୍ମରାଜ ହେଲା ପରାଜିତ ।
କର ତୁମ୍ଭ ଇଚ୍ଛା ତୋର ଯାହା, ଛେଡ଼ିଲି ସମର ।
(ଅସ୍ତ୍ର ଫିଙ୍ଗି ଦେବା ଓ ଫେରି ଆସିବା ସମୟରେ ତବର ପ୍ରବେଶ କରି)

## ଦୃଶ୍ୟାନୁକ୍ରମ—ଏକତିରିଶି

ତବର— ନ ଭୁଲିଣ ଶତ୍ରୁ ପ୍ରଲୋଭନ, କର ତାକୁ ବନ୍ଦୀ
(ଦୁଇଜଣ ପ୍ରହରୀ ଆସି ଧର୍ମରାଜଙ୍କୁ ବନ୍ଦୀ କଲେ)
ଆସ ଶୈଳେନ୍ଦ୍ରମାଧବ, ଅଚିରେ ଚଳିବା କଙ୍ଗୋଦାଧିପତି ଆସନେ
ଘେନିଆସ ସୁମିତ୍ରାକୁ କୋଶଳ ନଗରୁ
ଦେଇ ଧମୁଚିତ ଦଣ୍ଡ ଏ ଦୋଷୀକୁ
ତୁମ୍ଭେ ହେବ ଚକ୍ରବର୍ତ୍ତୀ ବିଶାଳ କଙ୍ଗୋଦେ
ଏତେ ଦିନେ ମୋର ମନସ୍କାମ ହୋଇବ ପୂରଣ
(ଜୟଧ୍ୱନି)—ଜୟ ବିଶାଳ କଙ୍ଗୋଦାଧୀଶ୍ୱର ଶୈଳେନ୍ଦ୍ରମାଧବଙ୍କର ଜୟ
ଘେନିଯାଅ ଏ ବନ୍ଦୀକୁ କଙ୍ଗୋଦ ନଗରେ,
ରହୁ ନିଜ କାରାଗାର ଗୃହେ ।
(ସଙ୍ଗୀତ, ସମସ୍ତଙ୍କର ପ୍ରସ୍ଥାନ, ଶୂନ୍ୟ ମଞ୍ଚ ଅନ୍ଧକାର)

## ଦୃଶ୍ୟାନୁକ୍ରମ—ବତିଶି

(ସଙ୍ଗୀତ ପରିବର୍ତ୍ତନ, ୧ମ ମଞ୍ଚ ଆଲୋକିତ ହେଲା, ପ୍ରଥମେ ସୁମିତ୍ରା ଓ ପରେ ଶୈଳେନ୍ଦ୍ରମାଧବ ପ୍ରବେଶ କଲେ, ସୁମିତ୍ରା ଅଭିମାନ କରିଥିଲେ ।)

ଶୈଳେନ୍ଦ୍ରମାଧବ—ସୁମିତ୍ରା ! ପ୍ରାଣର ସୁମିତ୍ରା !
ଆଜିର ଏ ଶୁଭ ବାସରରେ, ତୁମ କଥା ରହିଛ ନୀରବ

କଣି ଧର୍ମରାଜେ, ଆଜ ମୁହିଁ ଏକଛତ୍ର ଅଧିପତି
ବିଶାଳ କଙ୍ଗୋଦେ,
ଆଜି ତୁମେ କଙ୍ଗୋଦ ସାମ୍ରାଜ୍ଞୀ,
ଦେଇ ଅର୍ଘ୍ୟ କର ଗୋ ସ୍ୱାଗତ
ଆସ ! ଏହି ଆନନ୍ଦର ଦିନେ
ହର୍ଷୋଲ୍ଲାସେ ହୋଇବା ଉନ୍ମତ୍ତ
(ସୁମିତ୍ରା ନୀରବ) ଏ କଅଣ ! ରହୁଛ ନୀରବ
ଆଜଠାରୁ ଦିନେ, ତୁମର ଏ ବିଷାଦ ମୌନତା
ନ ଦିଶଇ ଭଲ । ଆସ ପ୍ରିୟତମା, ହୋଇ ସଜ ବେଶ
ସଗର୍ବେ ଚଳିବା ଆମ୍ଭେ କଙ୍ଗୋଦ ନଗରେ
ହେବ ମୋର ଅଭିଷେକୋତ୍ସବ ।
(ପୁଣି ସୁମିତ୍ରା ନୀରବ) ଏ କଅଣ, ତଥାପି ନୀରବ ।

(ଗୀତ)

ତୁ, ଅଭିମାନ କାହିଁ କରି ବସୁଛି ?
କେଉଁ କଥା ତୋତେ ଊଣା ଅଛୁଟି ?
ଦେଖିଲେ ତୋ ହସ ମୁଖରେ ହରଷ
ମୋର ଏ ପରାଣ ଯାଏ ଜଳିଛି ।
କସ ହେଲି ଲେଶ କର ପରକାଶ
ଜୀବ ଯାଉ ପଛେ ଦେବ ଆଣିଛି ।୧।
ଯାଇଥିଲେ ହଜ ଆଣି ଦେବ ଖୋଜ
ଭାଙ୍ଗିଥିଲେ ଗଢ଼ା କରାଇଦିଛି ।
କଙ୍ଗୋଦ ରାଇଜ ପକ୍ଷେ କେଉଁ ଚିଜ
ଊଣା ହୋଇ କେବେ ରହି ନାହିଁଛି ।୨।
ତୋ ମୁଖରୁ ପଦେ ଶୁଣିଲେ ଏ ହୃଦେ
କ୍ଷୁଧା ତୃଷ୍ଣା ଯାଏ ମୋ ଉଭାଇଛି ।
ତୋର ସେ ବଚନ ଆଣେ ଶିହରଣ
ନୂତନ ପ୍ରେରଣା ଦିଏ ଆଣିଛି ।୩।

(କଥା)—ନ ରହ ନୀରବ, କୁହ ପଦେ କଥା ମୋର ରାଣୀ ।

ସୁମିତ୍ରା—ଲାଜ ନାହିଁ ତୁମକୁ
ଛି, ଛି, ଛି, କି ନ କଲ ତୁମେ ! ଏତେ ଅମଣିଷ ହେଲ ।

(ଗୀତ)

ଅରଜ ଅଛ ଅପଯଶ, ହେ ଅମଣିଷ
ବନ୍ଧକଲ ବଡ଼ ଭାଇ ତୁମ ମୁଖେ ଲାଜ ନାହିଁ
ବଢିଲା ସିନା ପାପ ଅଶେଷ, ହେ ଅମଣିଷ ।୧।
ତୁମ ମୁଖ ଦରଶନ କର ସେ ତେଜନ୍ତେ ରଣ
ଭ୍ରାତୃସ୍ନେହ କଲେ ପରକାଶ, ହେ ଅମଣିଷ ।୨।
ଏପରେ ଭାଇକୁ ବାନ୍ଧ ଯାହା ରହିଛ ନ କାନ୍ଦ
ଅଳଜ୍ଜକ ପଣେ ହେଲ ଶେଷ, ହେ ଅମଣିଷ ।୩।
ବାଲ୍ୟସାଥୀ ଜ୍ୟେଷ୍ଠ ସେହୁ ପିତୃସମ ଅଟେ ସେହୁ
ଦେଖିଲ ତାଙ୍କର କେଉଁ ଦୋଷ, ହେ ଅମଣିଷ ।୪।
ଥିଲେ ମଣିଷ ପଣିଆ ନ ହୁଅନ୍ତ ଅମାନିଆ
ତମ ସିନା କଲ ତୁମେ ବଶ, ହେ ଅମଣିଷ ।୫।
ହୋଇ ଏଠି ବରବର ନ ରୁହ ହେ ହୁଅ ଦୂର
ଜୀବନେ ମୋ ରହିଲା ପରସ, ହେ ଅମଣିଷ ।୬।

ଶୈଳେନ୍ଦ୍ର ମାଧବ— ଏକି କଥା କୁହ ଗୋ ସୁମିତ୍ରା ?
ତୁମେ କି ନୋହୁଛ ସୁଖୀ ମୋର ଐଶ୍ୱର୍ଯ୍ୟରେ ?

ସୁମିତ୍ରା—କେଉଁ ଐଶ୍ୱର୍ଯ୍ୟ ତୁମ୍ଭର ରହିଥିଲା ଊଣା,
ମୋତେ ଜିଣି ପାଇଥିଲ କୋଶଳ ସାମ୍ରାଜ୍ୟ
ଆଜ କେଉଁ ଲୋଭ ମୋହେ ହୋଇ ତୁମେ ଅନ୍ଧ
ଜ୍ୟେଷ୍ଠ ଭ୍ରାତା ବିରୁଦ୍ଧରେ ରଚିଲ ସଂଗ୍ରାମ
କି ଭୟଙ୍କର ରାଜ୍ୟ ଲାଳସା ?
ଭାତୃ ସ୍ନେହ ଠାରୁ ଏହା ଅଟେ କି ମହତ ?
ରାଜାର ହୃଦୟେ ଦୟା, ମମତା କି ନାହିଁ ?
ଛି, ଛି, କି କହିବେ ଜଗତ ଜନତା ?
ଭାତୃବଧୂ ଆସି ଗୃହ ଭାଙ୍ଗିଲା ସହସା
ନାହିଁ ମୋର କିଛି ପ୍ରୟୋଜନ, ନ ବହିବି ଏ କଳଙ୍କ ମୁହିଁ ।
କେଉଁ ମୁଖ ଦେଖାଇବି ଯାଇ ତୁମପାଥେ, କଙ୍ଗୋଦ ନଗରେ ?

ଯେଉଁ ସହୋଦର ଭାଇ ଥିଲା ତୁମ ବାଲ୍ୟଗୁରୁ
ଯାହାର ସ୍ନେହ ବନ୍ଧନେ ଥିଲଟି ଜଡ଼ିତ
ଯାହାର ହୃଦୟ କାନ୍ଦେ ତୁମଲାଗି, ଦଣ୍ଡେ ନ ଦେଖିଲେ
ଯେଉଁ ଭାଇ ଦେଖି ତବ ମୁଖ, ଡେଇଁଲା ସମର
ଯେପରି ଭାଇଙ୍କୁ, ତାର ମମତାର ପ୍ରତିଦାନେ
କରୁଅଛ ବନ୍ଦୀ ? ଛି, ଛି, ଛି
ଜଗତ କ ମିଥ୍ୟାରେ ଗୃହୀତ (କ୍ରନ୍ଦନ)
ଯଦି ଇଚ୍ଛା ଥିବ ତୁମସାଥେ, ସସମ୍ମାନେ ମୁକ୍ତକରି ତବ ଜ୍ୟେଷ୍ଠଭ୍ରାତ
ଫେରାଇବ ସାମ୍ରାଜ୍ୟ ତାହାଙ୍କୁ
ନାହିଁ ଆବଶ୍ୟକ ମୋର ହେବାକୁ ସାମ୍ରାଜ୍ଞୀ
ସମ୍ରାଟଙ୍କ ଭାତୃବଧୂ ରୂପେ ମୋର, ନାହିଁକ ନହ ଯଥେଷ୍ଟ ସମ୍ମାନ ?

ଶୈଳେନ୍ଦ୍ର ମାଧବ—ସୁମିତ୍ରା—ଧନ୍ୟ ହେଲି ପାଇ ମୁଁ ତୁମକୁ
ଦେଖାଇଲ ଏ ଯେଉଁ ଆଦର୍ଶ
କୋଶଳ କନ୍ୟାଙ୍କୁ ସ୍ମରୁଥିବେ ଲୋକେ ଚିରଦିନ
ସତ୍ୟ କହୁଅଛ ତୁମେ ପ୍ରାଣରି ସୁମିତ୍ରା
କ୍ରୋଧରେ କରିଅଛି ବଡ଼ ଅପକର୍ମ
ଇଚ୍ଛି ଥିଲେ ରଣାଙ୍ଗନେ ନେଇଥାନ୍ତେ ପ୍ରାଣ, ମୋର ଭ୍ରାତ
କ କରିବି, କିଛି ବୁଦ୍ଧି ନ ଦିଶଇ ମୋତେ ?
ଧିକ୍, ଶତଧିକ୍ ଏ ଜୀବନ ମୋର
ନାଃ, ନାଃ, କ୍ଷମା ମାଗି ଫେରାଇବି, ଏ ରାଜ୍ୟ ସମ୍ପତ୍ତି
ମୁକୁଳାଇ ବନ୍ଦୀ ଗୃହୁ ମୋର ଜ୍ୟେଷ୍ଠ ଭ୍ରାତ
ଶାସ୍ତିକୁ ମୁଁ କରିବି ସ୍ୱାଗତ ।

## ଦୃଶ୍ୟାନୁକ୍ରମ—ତେତିଶ

ଚିତ୍ରର—(ପ୍ରବେଶକରି) କ କହୁଛ ଶୈଳେନ୍ଦ୍ର ମାଧବ
ଭୁଲିଲ କ ମୋର ସୁମନ୍ତ୍ରଣା
ଧର୍ମରାଜ ହୋଇପାରେ ତୁମ ସହୋଦର
କିନ୍ତୁ ରାଜନୀତି କ୍ଷେତ୍ରେ, ନୁହେଁ ତାହା ହିତୁରର ବସ୍ତୁ ।
(ଚିତ୍ରରକୁ ସମ୍ମାନ ନ ଦେଖାଇ ଶୈଳେନ୍ଦ୍ର ମାଧବ ଅନ୍ୟଆଡ଼େ
ଦୃଷ୍ଟି ଦେଲେ)

ଶ୍ରୀବର—ନ କର ଉଦ୍ରୋଧ, ଦିଅ ତାଙ୍କୁ ତା ଦଣ୍ଡ ବିଧାନ
ଶୀଘ୍ର ଦୂର କର ସେ କଣ୍ଟକ ।
ଭ୍ରାତାର ମମତା ହେଜ, ଇଚ୍ଛା ଯଦି ନ ନେବାକୁ ପ୍ରାଣ
ତେବେ ତାଙ୍କୁ କରି ନିର୍ବାସନ, କର ହେ ବର୍ଜନ
କିନ୍ତୁ ମନେରଖ, ଚିର ଶତ୍ରୁ ଭାବେ ସେହୁ ରହିବ ତୁମ୍ଭର
ଏ କଥାରୁ ଅନ୍ୟଥା ନୋହିବ ।

ଶୈଳେନ୍ଦ୍ର ମାଧବ—କ୍ଷାନ୍ତ ହୁଅ ପିତା—ଦମ୍ଭାକରି ରୁହନ୍ତୁ ନୀରବ
ଆଜଯୁଦ୍ଧା ତୁମ ବାକ୍ୟ ଦେଇ ମୁହିଁ ଯଥେଷ୍ଟ ସମ୍ମାନ
ନିଜର ସମ୍ମାନ ନଷ୍ଟ କରିଅଛି ମୁହିଁ
ଆଉର ତା' ଆବଶ୍ୟକ କରୁନାହିଁ ମନେ ।

ଶ୍ରୀବର—ଶୈଳେନ୍ଦ୍ର ମାଧବ—ମୋର ପ୍ରିୟ ଶୈଳେନ୍ଦ୍ର—

ଶୈଳେନ୍ଦ୍ର ମାଧବ—(ଘୃଣା ଚକ୍ଷୁରେ ଦେଖିବା) ଆସ ଗୋ ସୁମିତ୍ରା !
ଯିବା ଶୀଘ୍ର କଙ୍ଗୋଦ ନଗରେ ।

ସୁମିତ୍ରା—(ପିତାଙ୍କ ପ୍ରତି) ଜାମାତାଙ୍କର ବ୍ୟକ୍ତିଗତ ସମସ୍ୟାଗୁଡ଼ିକରେ ଅଯାଚିତଭାବେ ନିଜକୁ ଲିପ୍ତକରି, ଅପମାନ ବରଣ କରନ୍ତୁ ନାହିଁ ପିତୃଦେବ । ଏହାର ପରିଣାମ ନିତାନ୍ତ ଅପ୍ରୀତିକର ହେଉଛି । ଉପସ୍ଥିତ କ୍ଷେତ୍ରରେ ନିଜର ଦୁହିତାର ପାରିବାରିକ ମର୍ଯ୍ୟାଦା କ୍ଷୁର୍ଣ୍ଣ ହେଉଛି ।

ଶ୍ରୀବର—ସୁ - ମି - ତ୍ରା - ତୁ ।
(ଏ ସମୟରେ ଶୈଳେନ୍ଦ୍ର ମାଧବ, ସୁମିତ୍ରା ପ୍ରସ୍ଥାନ କରିଛନ୍ତି, ପରେ ଶ୍ରୀବର ପ୍ରସ୍ଥାନ । ୧ମ ମଞ୍ଚ ଅନ୍ଧକାର ।)

## ଦୃଶ୍ୟାନୁକ୍ରମ—ଚଉଦିଶି

(ସଙ୍ଗୀତ—ପରେ ପରିବର୍ତ୍ତନ, ୨ୟ ମଞ୍ଚ ଆଲୋକିତ, ଶୈଳେନ୍ଦ୍ର-ମାଧବ, ସୁମିତ୍ରା, ମହାମନ୍ତ୍ରୀ, ଦୂତ, ସୌଦାଗରଗଣ ପ୍ରବେଶ, ୨ୟ ମଞ୍ଚରେ ।)

ଶୈଳେନ୍ଦ୍ର ମାଧବ – ମହାମନ୍ତ୍ରୀ ସତ୍ୟସନ୍ଧ, ତୁମ୍ଭେ ଅଟ ସୁବିଜ୍ଞ ପ୍ରବର
ରାଜଦ୍ରୋହ ଅପରାଧ ଅଛିଅଛି ଯେହୁ
ସୁବିଚାରେ କେଉଁ ଦଣ୍ଡ ଉଚିତ ତାହାର ?

ମହାମନ୍ତ୍ରୀ—ରାଜଦ୍ରୋହ ଅପରାଧେ, ଅଛି ପ୍ରାଣଦଣ୍ଡ
କିନ୍ତୁ ମହାରାଜ, ରାଜା ଅଛି ସର୍ବ ଶକ୍ତିମାନ
ସର୍ବଶକ୍ତି ବିଦ୍ୟମାନ ଥାଏ ରାଜାଠାରେ
ଯେଉଁ ବ୍ୟକ୍ତି ଶତ୍ରୁ ବୋଲି ହେବ ପ୍ରମାଣିତ
ତାଙ୍କୁ ମୁକ୍ତି ଦିଆଯାଇପାରେ ଏକ ସର୍ତ୍ତାଧୀନରେ ।

ଶୈଳେନ୍ଦ୍ରମାଧବ—କେଉଁ ସର୍ତ୍ତ କୁହନ୍ତୁ ଫିଟାଇ

ମହାମନ୍ତ୍ରୀ—ପ୍ରାଣଦଣ୍ଡ ପରିବର୍ତ୍ତେ, ନିର୍ବାସନ ଦଣ୍ଡ, ଅଛି ବ୍ୟବସ୍ଥା
ଯେଉଁ ବ୍ୟକ୍ତି ହେବ ନିର୍ବାସିତ
ଯାବତ୍ ଜୀବନ ଯାପିବ ରାଜ୍ୟର ବାହାରେ
ଆଉ କେବେଁ ନଫେରିବ ଘରେ ।

ଶୈଳେନ୍ଦ୍ରମାଧବ—(ଦୀର୍ଘ ନିଶ୍ୱାସ)ଉଚିତ କହିଛ ମହାମନ୍ତ୍ରୀ
ଆଜି ହେବ ସମାଧାନ, ସମସ୍ତ ହନ୍ଦର
(ତାପରେ ଶୈଳେନ୍ଦ୍ରମାଧବ ଅତ୍ତଶାୟୁ ବିବ୍ରତ ଅବସ୍ଥାରେ ଇତସ୍ତତଃ ହେଲେ, ପରେ ଖୁବ୍ ଦୃଢ଼ କଣ୍ଠରେ ଆଦେଶ ଦେଲେ)

ଶୈଳେନ୍ଦ୍ରମାଧବ—ମହାମନ୍ତ୍ରୀ ! ଶୀଘ୍ର ଧର୍ମରାଜେ କରି ମୁକ୍ତ ସସମ୍ମାନେ
ଘେନି ଆସ ଏହି ଦରବାରେ ।

ମହାମନ୍ତ୍ରୀ—ଯେ ଆଜ୍ଞା ମହାରାଜ ! (ପ୍ରସ୍ଥାନ)

ସୌଦାଗର—ମହାରାଜ ! କ୍ଷମା କଲେ ଅଧୀନର ଦୋଷ
ପ୍ରକାଶିବୁ ଆମ ମନ କଥା ।
ଅବସର ସରିଛି ଆମ୍ଭର
ଆସନ୍ତା କାର୍ତ୍ତିକ ମାସ ପୂର୍ଣ୍ଣମୀର ଦିନ,
କର୍ମସ୍ଥଳେ ଫେରିଯିବୁ ପୁଣି ଆମ୍ଭେମାନେ ।
ଆସିଅଛୁ ନେବାକୁ ବିଦାୟ । କରିଥିଲୁ ଆମ୍ଭେ ଯେ ମାଗୁଣି
ପିତା ଯଶୋଭୀତ ପାଶେ, ତାର ପ୍ରତ୍ୟୁତ୍ତରେ
ପାଇନାହୁଁ କୌଣସି ସଙ୍କେତ ।

ଶୈଳେନ୍ଦ୍ରମାଧବ—ନୁହଁ ଧୈର୍ଯ୍ୟଚ୍ୟୁତ,
ଅଚିରେ ତୁମ କାମନା ହୋଇବ ପୂରଣ ।

## ଦୃଶ୍ୟାନୁକ୍ରମ – ପଞ୍ଚତରଣି

(ଠିକ୍ ଏହି ସମୟରେ ମହାମନ୍ତ୍ରୀ, ଧର୍ମରାଜଙ୍କ ସହ ୧ମ୍ବ ମଞ୍ଚକୁ ପ୍ରବେଶ କରନ୍ତି, ଧର୍ମରାଜଙ୍କୁ ଦେଖି ଶୈଳେନ୍ଦ୍ର ମାଧବ ଓ ସୁମିତ୍ରା ପ୍ରଣାମ କରୁଛନ୍ତି । ପ୍ରଣାମାନ୍ତେ ଧର୍ମରାଜ, ଶୈଳେନ୍ଦ୍ର ମାଧବଙ୍କୁ ଆଲିଙ୍ଗନ କରୁଛନ୍ତି ।)

ଶୈଳେନ୍ଦ୍ର ମାଧବ— ଭ୍ରାତୃଦେବ ମହୋଦୟ !
ହୋଇ ତୁମ୍ଭ ସ୍ନେହରେ ପାଳିତ, କଲି ମୁହିଁ କେଡ଼େ ଅପରାଧ
ମାତୃଭୂମି ବିରୁଦ୍ଧରେ ରଚିଲି ସଂଗ୍ରାମ ?
ଶୈଳୋଦ୍ଭବ ବଂଶେ ହୋଇ ଜାତ
ରାଜ ଦ୍ରୋହୀ, ପିତୃ ଦ୍ରୋହୀ, ଭ୍ରାତୃ ଦ୍ରୋହୀ ହେଲି
ଧିକ୍, ଶତଧିକ ମୋର ଏ ଜୀବନ ।
କଙ୍ଗୋଦ ଶାସନ ଭାର ଘେନନ୍ତୁ ବହନ
ମୋର ଅପରାଧ ପାଇଁ ଦିଅ ଦଣ୍ଡ ଯାହା ଉପଯୁକ୍ତ,
ଦିଅ ମୋତେ, କରିବି ସ୍ୱୀକାର ।
ଯେଉଁ ହସ୍ତେ ରଣ ତେଜି, ପ୍ରାଣରକ୍ଷା କରିଲ ମୋହର
ସେହି ହସ୍ତେ ଘେନ ଏହି ଅସି
କର ଶୀଘ୍ର ମୋର: ଶିର ଛେଦ ।
ଶେଷ ହେଉ ମୋର କୃତ ପାପ ।

ଧର୍ମରାଜ – ପ୍ରାଣର ଅନୁଜ, ମନୁଁ ଚିନ୍ତା କରିଦିଅ ଦୂର
ମହାମନ୍ତ୍ରୀ ମୁଖୁ ମୁହିଁ ଶୁଣିଛି ସମସ୍ତ ।
ଘେନ ତୁ ଏ ରାଜ୍ୟ ଭାର କରିଛି ମନସ୍ଥ
ଯିବି ମୁହିଁ ବନାସନେ, ସୌଦାଗରମାନଙ୍କ ଗହଣେ ।

ଶୈଳେନ୍ଦ୍ର ମାଧବ—ଏ କି କଥା କୁହ ଭ୍ରାତୃ ଦେବ, ନୁହଁ ତୁମ୍ଭେ ଦୋଷୀ,
ମହା ଦୋଷୀ ଅଟଇ ତ ମୁହିଁ, ରାଜଦ୍ରୋହ ଅପରାଧେ
ଦଣ୍ଡର ଯେ ନ୍ୟାଯ୍ୟ ଅଧିକାରୀ
ପାପ ପାଇଁ ପ୍ରାୟଶ୍ଚିତ ମୋହର କର୍ତ୍ତବ୍ୟ ।
ଯଦି ନ ଦିଅନ୍ତ ଶାସ୍ତି, ନିଜ ହସ୍ତେ ନେଇ ନିଜ ପ୍ରାଣ
ରଖିବି ମୁଁ କଙ୍ଗୋଦ ସମ୍ମାନ ।

(ଅସ୍ତ୍ର ଖାଡ଼ି ଆତ୍ମହତ୍ୟା କରିବା ଉଦ୍ୟମ, ଧର୍ମରାଜ ରକ୍ଷା
କରିବା)

ଧର୍ମରାଜ—ହୁଁ ଭାଇ, ନ ଧରନ୍ତୁ ଭ୍ରାନ୍ତ ଏ ବଚନ ।
ଉଃ, କ'ଣ କରିବ, ବୁଦ୍ଧି ନ ପାରଇ (ବ୍ୟସ୍ତଭାବେ)
ମହାମନ୍ତ୍ରୀ ! ଉପଯୁକ୍ତ ଉପଦେଶ ପ୍ରକାଶନ୍ତୁ ଶୀଘ୍ର ।

ମହାମନ୍ତ୍ରୀ—ଏ କି କଥା କୁହ ହେ କୁମାର,
ରାଜକାର୍ଯ୍ୟେ ଅତି ଧୈର୍ଯ୍ୟ ଅଟେ ଆବଶ୍ୟକ
ନିରପେକ୍ଷ ନ୍ୟାୟେ ନ ବହିଲେ,
ଦେଶ ବ୍ୟାପି ଘୋଟିଯିବ ଅଶାନ୍ତିର ବହ୍ନି ।

ଧର୍ମରାଜ—କେବେ ?

ମହାମନ୍ତ୍ରୀ—ମହାରାଜ, କଳୋଦର ଶାନ୍ତିଦୂତ
ନୌସେନାର ନେତାଙ୍କୁ ଅଧ୍ୟକ୍ଷ,
ଶୈଳେନ୍ଦ୍ର ମାଧବ ଅଟେ ଉପଯୁକ୍ତ ପାତ୍ର ।

ସୌଦାଗରଗଣ—କରୁଅଛୁ ସମର୍ଥନ ମନ୍ତ୍ରୀଙ୍କ ପ୍ରସ୍ତାବ ।

ଧର୍ମରାଜ—କନ୍ତୁ ସେ ଯେ ନିର୍ବାସନ ?

ଶୈଳେନ୍ଦ୍ର ମାଧବ—ଜ୍ୟେଷ୍ଠ ଭ୍ରାତ, କର ସ୍ୱୀକାର, କର ।

ଧର୍ମରାଜ—କଲି ସ୍ୱୀକାର
କଳୋଦ ନୌବାହିନୀର ସେନାଧ୍ୟକ୍ଷ ରୂପେ
ଯିବୁ ତୁହି ବାଲିଦ୍ୱୀପେ
ନିଜେ ତୁ ଭୋଗିବୁ, ନିଜ ଦଣ୍ଡ ନିର୍ବାସନ
ଅଭିଳାଷ ହେଉ ତୋର ପୂର୍ଣ୍ଣ ।

ସୌଦାଗରମାନେ ଓ ମନ୍ତ୍ରୀ—ଜୟ ମହାରାଜ ଧର୍ମରାଜ ମାନଧ୍ୱାନଙ୍କର ଜୟ
ଜୟ ରାଜକୁମାର ଶୈଳେନ୍ଦ୍ର ମାଧବଙ୍କର ଜୟ

ଶୈଳେନ୍ଦ୍ର ମାଧବ—ଭ୍ରାତୃଦେବ, ମହାରାଜ
ଦେଇଛ ଯେ ମୃତ୍ୟୁ ଦଣ୍ଡ, କ୍ଷମା, ଏବେ ଯଥେଷ୍ଟ,
ଚିରକାଳ ରହିବି ମୁଁ ତୁମର କୃତଜ୍ଞ
ଦିଅ ହେ ବିଦାୟ, ଯାଏ ଯତ୍ନେ ଯେଉଁ ଦେଶ
କଳୋଦର ଯଶ କାଢ଼ି ରଖିବି ଅକ୍ଷୁର୍ଣ୍ଣ

ଅବାଧ ନ ହେଉ କେବେଁ, କୌଷ୍ଟୁଭ୍ୟା ମୋର
ଛନ ଦେଶ ଶୋଭୁଛେ ତବ ।
ସୁଖସ୍ୱପ୍ନରେ ଧଡର ଦେଇଁ ଶାନ୍ତି, ଶାନ୍ତି ତ ଦୃଦର ଭାବା
ଭାବ। ଭକ୍ତିଶ୍ୱର୍ଯ୍ୟ ।
ଆନନ୍ଦୋଚ୍ଛ୍ୱାସରେ ତୁ ଏ ଧୁତ ଉଦ୍‌ବେଳତ
ଜୀବନରେ ଏଇ ଥର ଆସିଛୁ ସୁଯୋଗ
ମହାଶିବ ଜନ୍ମବାକୁ ତେବେ ଯୋଗୀ ମୂର୍ତ୍ତି
ଝରି ଦୁଇଁ କରୁଛନ୍ତି ନବ୍ୟମ, ପକ୍ଷୀ ଉଡି ବଣ ବଣ ମଗ୍ନ
ଗଗନ, ପବନ, ଲତା, ବୃକ୍ଷଗଣ, ବ୍ରହ୍ମାଣ୍ଡର ସକଳ ଦେବତା
କସ୍ତୁପ ମୁଁ ଉଦ୍ଧାର ରଚିତ, ଜଗତର କଳ୍ପ ଚେତନ
ପ୍ରଭୁର ନବ ବାଲ୍ମୀକି ପ୍ରଜ୍ଞ

ସମସ୍ତେ—(ଜୟଧ୍ୱନି) "ଜୟ ଜଗତ ରାଜକୁମାର ଶୈଳେନ୍ଦ୍ରମାଧବଙ୍କର
ଜୟ"

## ଦୃଶ୍ୟାନ୍ତର—ଛତଣି

(ଏହି ସମୟରେ ଯଶୋଧର ଓ ଚକର ପ୍ରବେଶିବେ)

ଯଶୋଧର—ପୁତ୍ର ଶୈଳେନ୍ଦ୍ରମାଧବ !
ଅନୁଚତ୍ର ଆଜ ତୋ ସ୍ୱସ୍ତର,
ଏହି ଚୋଖର ଚକର
ଶୁଣ ଏହାଙ୍କର କୁ ଦ୍ୱାର ।

ଚକର—ପୁତ୍ର ଶୈଳେନ୍ଦ୍ରମାଧବ, କୃଷ୍ଣଠା ସୁମିଶ୍ର !
ଲଜ୍ଜିତ ମୁଁ ନଜ କର୍ମବଳେ, କରନାହିଁ ମୋତେଟି ଏକାନ୍ତ
କାହାପାଥେ ରହି ଏଥି କାଟିବ ମୁଁ କାଳ
ମୋତେ ନେବ ସଙ୍ଗେ ଦୟାକର
ଧର୍ମରାଜ ଦେବବେ ତ କୋଣଳର ସାର ।

ଯଶୋଧର—ଆଜ ମୁଁ, ଫିର ମୁଁ କରଛୁ
ମୋର ବାନପ୍ରସ୍ଥ ହେବ ମେଷ୍ଟ ବାଲ୍ମୀକିଠାରେ ।
ପୁତ୍ର ଧର୍ମରାଜ
କର ଶୀଘ୍ର ସକଳ ବ୍ୟବସ୍ଥା ।

ଧର୍ମରାଜ—ଯଥା ଆଜ୍ଞା ତାତ !
ଢଦ୍‌ବାଦେଶେ କରିବି ମୁଁ ସବୁ ବନ୍ଦୋବସ୍ତ ।
(ଏ ପରେ ଢେଙ୍କ ୍ର ବନ୍ଧେ ଶୃଙ୍ଖଳ, ସମସ୍ତ କଳାକାର ମଞ୍ଚରେ ଧାଡ଼ି ବାନ୍ଧି ଠିଆ ହୋଇଗଲେ ଓ ଧର୍ମରାଜ ମଞ୍ଚର ମଧ୍ୟଭାଗରେ ଆସି କହିଲେ)

ଧର୍ମରାଜ—ଶୁଣ ମନ୍ତ୍ରୀ ସତ୍ୟସନ୍ଧ,
ଶୁଣ ଶୁଣ ନାଗରିକଗଣେ
ଶୁଣ ଶୁଣ କଙ୍ଗୋଦ ସନ୍ତାନେ
ରାଜାଦେଶ କରୁଛି ପ୍ରଚାର
ଆସନ୍ତା କାର୍ତ୍ତିକ ମାସ ଶୁକ୍ଳପକ୍ଷ ପୂର୍ଣ୍ଣିମୀର
ବ୍ରାହ୍ମ ପ୍ରତ୍ୟୁଷ ପୂର୍ବରୁ
ମୋର ଭ୍ରାତ ଶୈଳେନ୍ଦ୍ର ମାଧବ
ନିଜ ଦୋଷେ ନିଜକୁ ସେ କରିଣ ସାବ୍ୟସ୍ତ
ନିର୍ବାସନ ଦଣ୍ଡେ ଯିବ ସୁଦୂର ବିଦେଶେ,
ସଙ୍ଗେ ଯିବେ ପିତା ଯଶୋବନ୍ତ, ସୁମିତ୍ରା ଓ କୋଶଳ ତତ୍ପର
ବଂଶ ସସ୍ତ୍ର ସୈନ୍ୟ ସାମନ୍ତାଦ ସହ
ଚଳିବେ ସମୁଦ୍ର ବକ୍ଷେ, ପୋତମାଳା ଧରି
ସୁଦୂର ସେ ବାଲିଦ୍ୱୀପ ପୃଷ୍ଠେ
(କ୍ରମଶଃ କଳାକାରମାନେ ମଞ୍ଚରୁ ଧାଡ଼ି ବାନ୍ଧି ପ୍ରସ୍ଥାନ କରୁଥିଲେ)

(ଆଉ ଗୋଟିଏ କଣ୍ଠରେ)

ଭାଇ, ବନ୍ଧୁ, ପରିବାର, ଗୃହ ମାତୃଭୂମି, ମାୟା ଛିନ୍ନ କରି
'ସ୍ଥାୟୀ' ଭାବେ ରହିବେ ସେ ସ୍ଥାନେ ।
କେଭେଁ ନ ଫେରିବେ
କଙ୍ଗୋଦର ଅଜେୟ ନନ୍ଦନ,
ସ୍ଥାପିବେ ଅକ୍ଷୟ କୀର୍ତ୍ତି ସୁବର୍ଣ୍ଣ ଦ୍ୱୀପରେ
ଦେବଭୂମି କଙ୍ଗୋଦର ପ୍ରତୀକ ସ୍ୱରୂପେ
ଗଢିବେ 'ବଡ଼ ମନ୍ଦିର,' ଦେବାର୍ଚ୍ଚନା ପାଇଁ
ଉଡ଼ାଇବେ ସମଗ୍ର ବିଶ୍ୱରେ: କଙ୍ଗୋଦର ଗଉରବ ବାନା ।

(ଆଉ ଗୋଟିଏ କଣ୍ଠରେ)

ଶୁଣ ଶୁଣ ନାଗରିକଗଣ, ତୁମର କର୍ତ୍ତବ୍ୟ
ପୂର୍ଣ୍ଣିମୀର ଆଦ୍ୟ ଦିବସରେ, ଶୈଳୋଦ୍ଭବ ବଂଶ ଇଷ୍ଟଦେବ
ଶିବ ମନ୍ଦିରରେ,
ପାଳିବ ଅଖଣ୍ଡ ବ୍ରତ, କଙ୍ଗୋଦର ବୀରସୁତ ଶାନ୍ତ ଉଦ୍ଦେଶ୍ୟରେ
ବଡ଼ ଓଷା ବୋଲି ଯାର ନାମ, ଖ୍ୟାତଥିବ ଚିରକାଳ ପାଇଁ

(ଆଉ ଗୋଟିଏ କଣ୍ଠରେ)

ଆଉ ଶୁଣ ନାଗରିକ ଗଣ,
ସମଗ୍ର ରାଜ୍ୟର, ଆବାଳବୃଦ୍ଧ ବନିତା
ସର୍ବେ ହେବ ଠୁଳ, ପୁଣ୍ୟତୋୟା ମହାନଦୀ ତୀରେ
ସର୍ବେ ମିଳି କଙ୍ଗୋଦ ସୁତଙ୍କୁ
ଦେବ ଏକ ବିରାଟ, ମହାନ, ହୃଦୟର ଶ୍ରେଷ୍ଠ ସମ୍ବର୍ଦ୍ଧନା
ସର୍ବେ ମିଳି ଆ, କା, ମା, ବୈ, ରବେ
କମ୍ପାଇବ ଗଗନ ପବନ
ବୀର ଏଇ କଙ୍ଗୋଦ ନନ୍ଦନେ
ଯାହା ଦେବ ଅପୂର୍ବ ସ୍ପନ୍ଦନ
ଇତିହାସେ ଲିପିବଦ୍ଧ ହେବ ସ୍ୱର୍ଣ୍ଣାକ୍ଷରେ
ଚିରଦିନ ଜ୍ୱଳନ୍ତ ରହିବ
କଙ୍ଗୋଦର ଏ ଅଭୁଲା ସ୍ମୃତି

**"ବାଲିଯାତ୍ରା"**

(ଜୟଧ୍ୱନି) "ଜୟ କଙ୍ଗୋଦାଧିପତି ଧର୍ମରାଜ ମାନଭୀତଙ୍କର ଜୟ"
"ଜୟ ଶୈଳୋଦ୍ଭବ କୁଳତିଳକ,
ରାଜକୁମାର ଶୈଳେନ୍ଦ୍ର ମାଧବଙ୍କର ଜୟ"
"ଜୟ କଙ୍ଗୋଦର ବୀର, ସାଧୁ, ସୌଦାଗରମାନଙ୍କର ଜୟ"
(ସମସ୍ତଙ୍କର ପ୍ରସ୍ଥାନ, ସଙ୍ଗୀତ)

## ଦୃଶ୍ୟାନୁକ୍ରମ—ଶଇଁତରଣି

(ଘନ ଘନ ଶଙ୍ଖ, ହୁଳହୁଳି, ତୂରୀ ଶବ୍ଦ ମଧ୍ୟରେ "ଉଦ୍‌ବୋଧନୀ" ସମବେତ କଣ୍ଠରେ ଗାନ କରାଗଲା । ଚତୁର୍ଦ୍ଦିଗ ଆଲୋକମାଳାରେ ଉଦ୍ଭାସିତ ହେଲା ।)

## ସମବେତ କଣ୍ଠରେ ବିଦାୟକାଳୀନ ସଙ୍ଗୀତ

ଦଣ୍ଡରେ ବିଦାୟ ସମ୍ବର୍ଦ୍ଧନା, କଙ୍ଗୋଦ ସନ୍ତାନେ ଆଜ,
ଗୃହ ପରିବାର, ଜନ୍ମଭୂମିକୁ, ଯାଉଛନ୍ତି ସେ ମଗ ତେଜ ।୧।
ସବୁର ମମତା ଛିନ୍ନ କରୁଛନ୍ତି ସେତ ଚିରକାଳ ପାଇଁ,
ଦଣ୍ଡରେ ଦଣ୍ଡରେ ତାକୁ ମେଲଣି, କେଜଣ ଅଛ ଆସ ଧାଇଁ ।୨।
କଙ୍ଗୋଦ କୁମାର ଶୈଳେନ୍ଦ୍ରମାଧବ ଯାଉଅଛନ୍ତି ନିର୍ବାସନ,
ନିଜ ଅପରାଧେ, ନିଜେ ନିଜ ପାଇଁ କରୁଛନ୍ତି ଦଣ୍ଡ ବିଧାନ ।୩।
ନିଜ ଦେଶ ପ୍ରେମ ପିତୃଭକ୍ତିର ରଖିଲ ଯେଉଁ ଆଦର୍ଶ,
ତୁଳନା ଏହାର ନାହିଁ ଇତିହାସେ, ଶ୍ରେଷ୍ଠ ତୁ ସମଗ୍ର ବିଶ୍ୱ ।୪।
ବଂଶ ସହସ୍ର କଙ୍ଗୋଦ ସୁତ, ସଙ୍ଗେ ପୋତମାଳା ଧରି,
ମେଲିବେ ଅନନ୍ତ ସାଗର ବକ୍ଷେ, ଚଳିବେ ଦରିଆ ପାରି ।୫।
ଯିବେ ସେ ତ ଚାଲି ଆଉ କେବେହେଲେ ନ ଫେରିବେ ତାଙ୍କ ଘରେ,
ସ୍ୱା'ଠାରୁ ଦାରୁଣ ବିଚ୍ଛେଦ ଗାଥା, କେହୁ କାହିଁ ଶୁଣିଛରେ ।୬।
ଭୂମ ସ୍ନେହ ଭୂମ ମମତା ବନ୍ଧନ ତୋଡ଼ି ଆଜ ଯିବ ଛାଡ଼ି,
ଯେତେ ଟାଣି ଧରି ବାନ୍ଧି ପଛେ ତାକୁ, ହେବକି ଆଉ ସେ ଭେଟ ।୭।
ଭୂମ ଆଜି ତା'ର ଶରଧା ମନ୍ଦିରେ ଉତ୍ସବ ଦରିଆ କେତେ,
କି ହେବ କାନ୍ଦିଲେ, ସେ ଅଶ୍ରୁ ଧାରରେ ବଢ଼ିବ ଯିବା ସେ ଯେତେ ।୮।
ଫେରିବନି ଆଉ, ଜାଣି ଆଉ ଥାଉ, କାହିଁକି କାନ୍ଦବୁ ତୁହି,
କେତେଥର ପାଇଁ, ଦେଇଥା ମେଲଣି, ଆଉ ସେ ଆସିବ ନାହିଁ ।୯।
ସୁବର୍ଣ୍ଣ, ଶ୍ୟାମଳ, ଯବ ଓ ମଳୟ, ବାଲିଦ୍ୱୀପେ ସେତ ଯିବ,
"ସ୍ୱାମୀ"ଙ୍କବେ ଉନ୍ନ କରୁ ଘରଦ୍ୱାର ବଡ଼ୁ ତା ଯଶ ବଢ଼ିବ ।୧୦।
ବରଷକୁ ଥରେ ଆମ ସୌଦାଗରେ ଆଣିବେ ତା'ର ବାରତା,
ସୁଖ, ଦୁଃଖ, ଆମେ ହେବା ଜଣାଜଣି, ସେତିକ ଥିବ ମମତା ।୧୧
ଭଗବାନ ତାର ହୁଅନ୍ତୁ ସହାୟ, ହେଉ ସେ ସୁଖୀ ବିଜୟୀ,
ମାତୃଭୂମିର ସୁନାମ ଗୌରବ, ରଖୁ ଚିରଦିନ ପାଇଁ ।୧୨।
ନିଜଧରମର ଉପାସନା ପାଇଁ ଗଢ଼ିବେ ବଡ଼ ମନ୍ଦିର,
ଚିରଦିନ ପାଇଁ ଦେଶେ ଓ ବିଦେଶେ ଖ୍ୟାତି ବ୍ୟାପିଥିବ ତାର ।୧୩।
ଧରମ ଦେବତା ରହି ଆମେ ସାକ୍ଷୀ ଦେଉଛୁ ତାକୁ ମେଲଣି,
ଈଶ୍ୱର ପଶ୍ଚିମ ସୁଲୁସୁଲି ବାଆ ନେଉ ତା ନଉକା ଟାଣି ।୧୦।

ଦୁଃଖ, ବିଚ୍ଛେଦ, ମୋହ, ମାୟା ଭୁଲି ଆସ ହେ ସଭିଏ ମିଳି,
ଦିଅ ଉଦ୍‌ବୋଧନ, ଏକ ସ୍ୱରରେ ଆନନ୍ଦରବକୁ ତୋଳି ।୧୫।

ଆ,କା,ମାଭୈ, ଆ,କା,ମାଭୈ, ଆ,କା,ମାଭୈ, କର ଲୟ,
ଟାଣି ପବନକୁ ନ ରଖି ସେ ଭୟ ଦିଅ ହେ ଶ୍ରେଷ୍ଠ ବିଦାୟ ।୧୬।

ଏତିକ ମାଗୁଣି ରହିଲା ଗୁମ୍ଫଟି ରଖିଥିବ ତୁମ ମନେ,
ଭୁଲିଯିବ ନାହିଁ ଏଇ ଦିନ ମୁଁ କି ବରଷକେ ଥରେ ଦିନେ ।୧୭।

ଦସ, କାନ୍ଦର ମହାନ ଆଦର୍ଶ, ଏ ବିଦାୟ ସମ୍ବର୍ଦ୍ଧନା,
ଦଶ ଇତିହାସେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହେଲା ସିନା ।୧୮।

## ଦୃଶ୍ୟାନୁକ୍ରମ—ଅଠତରିଶି

(ଗୀତ ଶେଷ ବେଳକୁ ଦେଖାଗଲା ରଙ୍ଗ ପ୍ରାନ୍ତରର ସମସ୍ତ ମଣ୍ଡଳ ଠାରେ ବିଦାୟକାଳୀନ ଦୃଶ୍ୟ—ଧର୍ମଗଜ ଅନ୍ୟ ସମସ୍ତଙ୍କୁ ବିଦାୟ ସମ୍ବର୍ଦ୍ଧନା ଜଣାଉଛନ୍ତି ।)

## ଦୃଶ୍ୟାନୁକ୍ରମ—ଅଣଚାଳିଶି

ଆ କା ମା ଭୈ — ମା ଭୈ, ମା ଭୈ
ଆ କା ମା ଭୈ — ମା ଭୈ, ମା ଭୈ
ଆ କା ମା ଭୈ — ମା ଭୈ, ମା ଭୈ

(ଆକାମାଭୈ ଆନନ୍ଦରବରେ ଗଗନ ପବନ ମୁଖରିତ ହେଲା ବେଳକୁ ସମସ୍ତ କଳାକାର, କର୍ମବୃନ୍ଦମାନେ ଆଉଥରେ ସମସ୍ତଙ୍କର ଆଶୀର୍ବାଦ ଭିକ୍ଷା ଲଭି, ଦର୍ଶକମାନଙ୍କ ସମ୍ମୁଖକୁ ଆସି ପୁଣି ଥରେ ଶୁଭାଶୀର୍ବାଦ ପ୍ରାର୍ଥନା କରିବେ ଏବଂ ପରେ ଶୃଙ୍ଖଳିତ ଭାବରେ ବେଶଘର ଅଭିମୁଖରେ ପ୍ରସ୍ଥାନ କରିବେ ।

—ସମାପ୍ତ—

ଶାନ୍ତି ପ୍ରେସ, ଭୁବନେଶ୍ୱର-୧ ରେ ମୁଦ୍ରିତ—୧୯୭୧

ଲେଖକଙ୍କର ଅନ୍ୟ କେତେଖଣ୍ଡି ବହି
ମୁଦ୍ରଣ ପ୍ରତୀକ୍ଷାରେ......

**ସିନେମା ରାଇଜ**

**Vote for Jatra**



ଲେଖକ

ଅଭିନେତା

ନିର୍ଦ୍ଦେଶକ

ଭାଷ୍ୟକାର

ଓ

ଅଭିନବ ମଞ୍ଚକାର

## ଧୀରେନ୍ ଦାଶ

(ଜନ୍ମ-୧୯୨୭, ଅନୁଗୋଳ । ୧୯୪୭ରୁ ୧୯୬୨ ପର୍ଯ୍ୟନ୍ତ ବମ୍ବେରେ ଅବସ୍ଥାନ । ବମ୍ବେରୁ ପ୍ରକାଶିତ "କୁଙ୍କୁମ" ପତ୍ରିକାର ପରିଚାଳନା ସମ୍ପାଦକ । ମିଷ୍ଟର ରବାର୍ଟ ମାର୍ଶାଲଙ୍କ ଅଧ୍ୟକ୍ଷତାରେ ପରିଚାଳିତ ବମ୍ବେ ନାଟ୍ୟ ଏକାଡେମୀରୁ ନାଟ୍ୟକଳାରେ ଡିପ୍ଲୋମାପ୍ରାପ୍ତ । ମିଷ୍ଟର ଚାର୍ଲସ୍ ଏଲସନ୍‌ଙ୍କ ଠାରୁ "ପ୍ରେକ୍ଷା ପରିକଳ୍ପନା" ସମ୍ବନ୍ଧୀୟ ବିଶେଷ ଜ୍ଞାନ ଅର୍ଜନ ।

ଅଧୁନା ଓଡ଼ିଶାର ବିଲୁପ୍ତପ୍ରାୟ ପାରମ୍ପରିକ ନାଟ୍ୟଶୈଳୀର ପୁନରୁଦ୍ଧାର ଓ ପ୍ରଦର୍ଶନରେ ବ୍ରତୀ, ଗଣକବି ବୈଷ୍ଣବ ପାଣିଙ୍କ କୃତିକୁ ବିଦଗ୍ଧ ଜନତା ସମ୍ମୁଖରେ ପ୍ରକାଶ ତଥା ପ୍ରସାର କରାଇବାରେ ମୁଖ୍ୟ ଉଦ୍‌ଯୋଗୀ ।)